
ରଣପୁର ଇତିହାସ

# ରଣପୁର ଇତିହାସ

# RANPUR ITIHAS

ଲେଖକ :
**ଶ୍ରୀ ସତ୍ୟବାଦୀ ବଳିଆରସିଂହ**
ଗ୍ରା/ପୋ- ଗଡବାଣିକିଲୋ
ଭାୟା- ରାଜ ରଣପୁର
ଜି- ପୁରୀ-୭୫୨୦୨୬

Written by :
**Sri Satyabadi Baliarsingh**
At/Po. Garh Banikilo
Via- Raj-Ranpur
Dist- Puri 752026



ପ୍ରକାଶକ :
**ଶ୍ରୀ ସତ୍ୟବାଦୀ ବଳିଆରସିଂହ**

Published by :
**Sri Satyabadi baliarsingh**

ଦ୍ୱିତୀୟ ସଂସ୍କରଣ—୧୯୯୦

Second Edition 1990

ମୁଦ୍ରଣ :
**ଶ୍ରୀ ସିମାଚଳ ମିଶ୍ର**
ଶାନ୍ତିପ୍ରେସ, ଟାଙ୍ଗି, ପୁରୀ

Printed by :
**Sri Simachal Mishra**
Santi Press, Tangi, Puri

**ମୂଲ୍ୟ - ଟ ୨୨-୦୦**

**Price Rs. 22·00**

# ଉତ୍ସର୍ଗ

ରଣପୁର ଇତିହାସର ବହୁ
ଘଟଣାବଳୀ ଯାହାଙ୍କର ମାନସ
ପଟରେ ଉଦ୍‌ଭାସିତ ହୋଇଥିଲା,
ଯେ ମୋତେ ଏହି ପୁସ୍ତକ
ରଚନାରେ ବଳିଷ୍ଠ ପ୍ରେରଣାର
ଉତ୍ସ ରୂପେ ଆବିର୍ଭୂତ ହୋଇଥିଲେ;
ସେହି ଶତାୟୁ ମହାନ୍ ଆତ୍ମା
ସ୍ୱର୍ଗତ ଚିନ୍ତାମଣି ପରିଡ଼ାଙ୍କର
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ
ପୁସ୍ତକଟି ଅର୍ପଣ କଲି ।

**Professor Manmath Nath Das**
Ph. D. (London), D. Litt. (Utkal)
Formerly Vice-Chancellor, Utkal University
17 Satya Nagar, Bhubaneswar-751007
ORISSA

# ଅଭିମତ

ଧର୍ମୀୟ ଓ ସାଂସ୍କୃତିକ ଐତିହ୍ୟ ଦୃଷ୍ଟିରୁ ଓଡ଼ିଶା ଇତିହାସରେ ରଣପୁରର ସ୍ଥାନ ମହତ୍ତ୍ୱପୂର୍ଣ୍ଣ । ପୌରାଣିକ କିମ୍ବଦନ୍ତୀ ଠାରୁ ଆରମ୍ଭ କରି ଐତିହାସିକ ଉପାଦାନ ପର୍ଯ୍ୟନ୍ତ ବିଭିନ୍ନ ମାଧ୍ୟମ ଉପଯୋଗ ଦ୍ୱାରା ଏହି ସ୍ଥାନର ଗୁରୁତ୍ୱ ପ୍ରତିପାଦନ ପ୍ରଚେଷ୍ଟା ସ୍ୱାଗତଯୋଗ୍ୟ ।

ଶ୍ରୀ ସତ୍ୟବାଦୀ ବଳିଆରସିଂହ ତାଙ୍କ ରଚିତ 'ରଣପୁର ଇତିହାସ' ପୁସ୍ତକରେ ଓଡ଼ିଶାର ଏକ ପ୍ରଖ୍ୟାତ ଅଞ୍ଚଳ ଉପରେ ଆଲୋକପାତ କରିବା ପାଇଁ ଯେଉଁ ଉଦ୍ୟମ କରିଛନ୍ତି ସେଥିପାଇଁ ସେ ଧନ୍ୟବାଦାର୍ହ । ଅତି ପ୍ରାଚୀନ କାଳର ଇତିକଥା ସମ୍ପର୍କରେ ସତ୍ୟାସତ୍ୟ ନିରୂପଣ କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର । କିନ୍ତୁ, ମଧ୍ୟଯୁଗ ଓ ଆଧୁନିକ ଯୁଗର ଘଟଣା ପ୍ରବାହ ଅନୁଧ୍ୟାନ ଦ୍ୱାରା ଲେଖକ ଯେଉଁ ପ୍ରକାର ଦିଗ୍‌ଦର୍ଶନ ଦେଇ ପାରିଛନ୍ତି ତଦ୍ୱାରା ଅଧିକତର ଗବେଷଣା ପାଇଁ ଅନ୍ୟମାନେ ଯଥେଷ୍ଟ ପ୍ରେରଣା ପାଇ ପାରିବେ ।

ବିଭିନ୍ନ ସମୟର ସମାଜ ଓ ସଂସ୍କୃତି ବିଷୟରେ ଏହି ପୁସ୍ତକ ଅନେକ ସୂଚନା ଦେଇ ପାରିଛି । ସ୍ୱାଧୀନତା ଆନ୍ଦୋଳନର ପରିପ୍ରେକ୍ଷୀରେ ରଣପୁରର ଗୌରବପୂର୍ଣ୍ଣ ଭୂମିକା ପୁସ୍ତକରେ ପ୍ରତିଫଳିତ ହୋଇଛି । ସାହିତ୍ୟ ଓ କଳା କ୍ଷେତ୍ରରେ ଏହି ସ୍ଥାନର ଅବଦାନ ସଂକ୍ଷେପରେ ସୂଚିତ କରାଯାଇଛି ।

ବହୁ ଅଧ୍ୟୟନ ଓ ଅଧ୍ୟବସାୟ ଦ୍ୱାରା ଲେଖକ ଏପରି ଏକ ଉପାଦେୟ ପୁସ୍ତକ ରଚନା କରି ପାରିଛନ୍ତି । ସୁନ୍ଦର ଓ ମାର୍ଜିତ ସାହିତ୍ୟରେ ଲିଖିତ ଏହି ଇତିହାସ ପାଠକ ମାନଙ୍କର ନିଶ୍ଚୟ ଉପଭୋଗ୍ୟ ହେବ, ଏଥିରେ ସନ୍ଦେହ ନାହିଁ ।

'ରଣପୁର ଇତିହାସ' ଓଡ଼ିଶାର ଅନ୍ୟ ଅଞ୍ଚଳ ମାନଙ୍କର ସ୍ଥାନୀୟ ଇତିହାସ ପ୍ରଣୟନ ପାଇଁ ପ୍ରେରଣା ରୂପେ କାର୍ଯ୍ୟକରିବ, ଏତିକି ଆଶା ।

ମନ୍ମଥ ନାଥ ଦାସ
୧୯-୭-୧୯୮୮

# ମୁଖବନ୍ଧ

ମୂଳବଧିର ଆଧାର ସାମଗ୍ରୀର ଅବଲମ୍ବନରେ କୌଣସି ସ୍ଥାନ, କାଳ ଓ ପାତ୍ରର ଇତିହାସ ଲେଖିବା ଏକ କଷ୍ଟସାଧ୍ୟ ବ୍ୟାପାର ଅଟେ । କୌଣସି ପ୍ରଧାନ, ଉଚ୍ଚ ଖ୍ୟାତିସମ୍ପନ୍ନ ସର୍ବବ୍ୟାପ୍ତ ବିଷୟକ ଇତିହାସ ଯାହାକୁ କି ବୃହତଭିତ୍ତିକ ଇତିହାସ (macro history) କୁହାଯାଇପାରେ, ତାହା ଲେଖିବା ସହଜ ଦାୟକ । କିନ୍ତୁ ଏକ ସାଧାରଣ, ନିମ୍ନଖ୍ୟାତି ସମ୍ପନ୍ନ, ସୀମିତ କଳେବର ପ୍ରଧାନ ବିଷୟକ କ୍ଷୁଦ୍ର ଭିତ୍ତିକ ଇତିହାସ (micro history) ଲେଖିବା ଅପେକ୍ଷାକୃତ ଯଥେଷ୍ଟ କଷ୍ଟସାଧ୍ୟ ହୋଇଥାଏ । କାରଣ ପୂର୍ବୋକ୍ତ ଇତିହାସର ବିଷୟବସ୍ତୁ ଅପେକ୍ଷାକୃତ ସହଜରେ ଅନେକ ପୂର୍ବ ପ୍ରକାଶିତ ପୁସ୍ତକ, ଶିଳାଲିପି । ବିଭିନ୍ନ ପୁରାତନ କନଷ ଆଦିର ମାଧ୍ୟମରେ ବିଭିନ୍ନ ପ୍ରଧାନ ପ୍ରଧାନ ସଂଗ୍ରହାଳୟ, ସୁଲଭ୍ୟ ପୁସ୍ତକ ଓ ଖ୍ୟାତି ସମ୍ପନ୍ନ ଅଧ୍ୟୟନ କେନ୍ଦ୍ର ମାନଙ୍କରୁ ମିଳୁଥିଲାବେଳେ କ୍ଷୁଦ୍ରଭିତ୍ତିକ ଇତିହାସର ତଥ୍ୟମାନ ସଂଗ୍ରହ ପାଇଁ ଏ ସମସ୍ତ ସୁବିଧା ରହିନଥାଏ । ସେହିପରି ବୃହତଭିତ୍ତିକ ଇତିହାସର ଘଟଣାବଳୀ ସହ ବହୁ ଅଞ୍ଚଳ, ଜାତି ସଂପୃକ୍ତ ଥିବା ହେତୁ ତାହାର ଅଧ୍ୟୟନ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ହେଉଥିବାବେଳେ କ୍ଷୁଦ୍ରଭିତ୍ତିକ ଇତିହାସ ସୀମିତ ଅଞ୍ଚଳ ସହ ସଂପୃକ୍ତ ଥିବାହେତୁ ତାହା ଶିକ୍ଷା କ୍ଷେତ୍ରରେ ପ୍ରାଧାନ୍ୟ ପାଇ ପାରିନଥାଏ ।

ଉପରୋକ୍ତ ଘଟଣାବଳୀ ସତ୍ତ୍ୱେ ଇତିହାସର ଗୁରୁତ୍ୱ ଅନେକ ଗୁଣରେ ଅଧିକ ଅଟେ । କାରଣ ଯେଉଁ ଅଞ୍ଚଳ, ଜାତି ପ୍ରଭୃତି ବିଷୟରେ କୌଣସି ଏକ କ୍ଷୁଦ୍ର ଭିତ୍ତିକ ଇତିହାସ ଲେଖା ହୋଇଥିଲେ ସେ ଅଞ୍ଚଳ ତଥା ତତ୍ସଲଗ୍ନ ଅଞ୍ଚଳର ଜନସାଧାରଣ ଏ ଶ୍ରେଣୀୟ ଇତିହାସ ପଠନରେ ଯେଉଁ ଆଗ୍ରହ ପ୍ରକାଶ କରିଥାନ୍ତି, ସେହି ପ୍ରକାରର ଆଗ୍ରହ ବୃହତଭିତ୍ତିକ ଇତିହାସ ପଠନରେ ସାଧାରଣ ଲୋକଙ୍କ ମଧ୍ୟରେ ଦେଖାଯାଇ ନଥାଏ । ତେଣୁ ପ୍ରତ୍ୟେକ ଲୋକର ଆଞ୍ଚଳିକ, ଜାତିଗତ ପରମ୍ପରା ଉପରେ ସାଧାରଣ ଲୋକଙ୍କୁ ଅବଗତ କରାଇବାରେ କ୍ଷୁଦ୍ରଭିତ୍ତିକ ଇତିହାସର ଅବଦାନ ଯଥେଷ୍ଟ ଅଟେ । ପୁନଶ୍ଚ ବୃହତଭିତ୍ତିକ ଉଚ୍ଚ ଖ୍ୟାତିସମ୍ପନ୍ନ ତଥ୍ୟ ଉପରେ ଗୁରୁତ୍ୱ ଦେଇ ଅନେକ ଲୁକ୍କାୟିତ ଆଞ୍ଚଳିକ ତଥ୍ୟ ଉପରେ ଆଲୋକପାତ କରିପାରି ନଥାଏ । କିନ୍ତୁ କ୍ଷୁଦ୍ରଭିତ୍ତିକ ଇତିହାସ ଏକ ସୀମିତ ଅଞ୍ଚଳ ଉପରେ ଗବେଷଣା କରି ଅନେକ

ପ୍ରଧାନ ଲୁପ୍ତପ୍ରାୟ ତଥ୍ୟକୁ ଲୋକଲୋଚନକୁ ଆଣିଥାଏ । ଫଳରେ ଏହିସବୁ ତଥ୍ୟମାନ ସମବେତ ଭାବରେ ପରିବ୍ୟାପ୍ତ ହୋଇ ବୃହତଭିତ୍ତିକ ଇତିହାସକୁ ସମୃଦ୍ଧ କରିଥାଆନ୍ତି ।

ରଣପୁରର ଇତିହାସ ହେଉଛି ଏକ କ୍ଷୁଦ୍ରଭିତ୍ତିକ ଇତିହାସ । ରଣପୁର ଓଡ଼ିଶାର ପ୍ରାକ୍ ସ୍ୱାଧୀନତା କାଳରେ ଏକ କ୍ଷୁଦ୍ର ଗଡ଼ଜାତ ହୋଇଥିଲେ ମଧ୍ୟ ଉଚ୍ଚ ପରମ୍ପରା, କୁସଂସ୍କାର, ସାହିତ୍ୟ, କଳା, ଜାତୀୟତାଭାବ, ଧର୍ମ, ସଂସ୍କୃତି, ରାଜନୀତି ଇତ୍ୟାଦି ଦିଗରେ ଏହାର ଇତିହାସ ଯେ ଉଚ୍ଚକୋଟୀର ତାହା ଏହି ପୁସ୍ତକ ପଢ଼ିଲେ ମୋଟାମୋଟି ଭାବେ ଅନୁମାନ କରିପାରିବେ । ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଶାରେ ଥିବା ଗଡ଼ଜାତମାନଙ୍କ ମଧ୍ୟରେ ରଣପୁର ହିଁ ପ୍ରାଚୀନତମ । ଏହାର ଇତିହାସ ଦୀର୍ଘ ତିନିହଜାର ସାତଶହ ବର୍ଷର ଇତିହାସ ।

ରଣପୁରକୁ ପୂର୍ବେ 'ରଣାସୁରପୁର' କୁହାଯାଉଥିଲା । ରଣାସୁର ପୁରରୁ ରଣପୁର ନାମକରଣ ହୋଇଛି । ରଣାସୁର ନିଧନ ହେବାପରେ ବଶିଷ୍ଠବାସବ ରଣପୁରର ରାଜା ହେଲେ । ବଶିଷ୍ଠବାସବ ପ୍ରକୃତରେ ରାଜବଂଶର ପ୍ରଥମ ରାଜା । ଏହି ରାଜବଂଶରେ ୧୧୨ଜଣ ରାଜା ରାଜତ୍ୱ କରି ଆସିଛନ୍ତି । ସେମାନଙ୍କର ସମ୍ବନ୍ଧରେ ସବିଶେଷ ଆଲୋଚନା କରାଯାଇଛି । ଏ ପ୍ରସଙ୍ଗରେ ରଣପୁରର ବିଶେଷ ଘଟଣାବଳୀର ସଂକ୍ଷେପ ସୂଚନା ପ୍ରଦତ୍ତ ହୋଇଛି । ତନ୍ମଧ୍ୟରେ ରଣପୁର ପ୍ରଜା ଆନ୍ଦୋଳନ ଓ ବେଜଲଗେଟ୍ ହତ୍ୟା ଆଦି ଘଟଣାବଳୀ ସ୍ଥାନିତ ହୋଇଛି ।

ରଣପୁର ଇତିହାସ ଲେଖିବା ଦ୍ୱାରା ଅନେକ ଲୁପ୍ତପ୍ରାୟ ତଥ୍ୟଗୁଡ଼ିକୁ ପୁନର୍ଜୀବିତ କରିବାର ପ୍ରୟାସ କରାଯାଇଛି । ଭାରତ ଇତିହାସର ଏହି ଅନାମଧେୟ ଅଞ୍ଚଳ ଉପରେ ତଥ୍ୟ ସଂଗ୍ରହ କରିବା ପାଇଁ ଅନେକ ଶ୍ରମ ସାଧନ କରିବାକୁ ପଡ଼ିଛି । ବିଶେଷତଃ ଗାଁ ଗାଁ ବୁଲି ବୟସ୍କ ଲୋକମାନଙ୍କ ସ୍ମୃତିରୁ ଓ ସେମାନଙ୍କ ନିକଟରେ ଥିବା ପୁରାତନ କାଗଜପତ୍ର ଆଦିରୁ ତଥ୍ୟ ସଂଗ୍ରହ କରିବାରେ ବହୁ କଷ୍ଟ ସ୍ୱୀକାର କରିବାକୁ ହୋଇଛି । ଅନେକ ବିଶିଷ୍ଟ ବ୍ୟକ୍ତି ପତ୍ର ମାଧ୍ୟମରେ ତଥ୍ୟମାନ ଯୋଗାଇଛନ୍ତି । ସେହିପରି ରଣପୁର ରାଜପ୍ରାସାଦ, ଭୁବନେଶ୍ୱରସ୍ଥିତ ରାଜ୍ୟ ସଂଗ୍ରହାଳୟ, ରାଜ୍ୟ ଅଭିଲେଖାଗାର ଓ ତତ୍ସଂପୃକ୍ତ ବ୍ୟକ୍ତିମାନଙ୍କ ଠାରୁ ବହୁ ତଥ୍ୟ ମିଳି ପାରିଛି । ଲେଖକ ମାନଙ୍କ ବିଭିନ୍ନ ପୁସ୍ତକ ଅଧ୍ୟୟନ ଦ୍ୱାରା ଏହି ପୁସ୍ତକର ବିଷୟବସ୍ତୁ ପରିପୁଷ୍ଟ ହୋଇପାରିଛି ।

ଏହା ଅଧ୍ୟୟନ କରି ପାଠକମାନେ ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେଲବୋଲି ଅନୁଭବ କରିବି ।

ମୋର ପରମ ଶୁଭାକାଙ୍କ୍ଷୀ ବାଙ୍କୋଇ ପାଞ୍ଚଗଡ଼ ଅନଙ୍ଗ ନରେନ୍ଦ୍ର ଶିକ୍ଷାନିକେତନର ପ୍ରତିଷ୍ଠାତା ଶ୍ରୀ କାଳଚରଣ ଜୟସିଂହ, ଗଡ଼ବାଣୀକିଲେ ମହାବିଦ୍ୟାଳୟର ଅଧ୍ୟାପକ ଶ୍ରୀ ରଶ୍ମିରଞ୍ଜନ ପଣ୍ଡା, ଅଧ୍ୟାପକ ଶ୍ରୀ ଜ୍ୟୋତିରଞ୍ଜନ ଦାସ, ଅଧ୍ୟାପକ ଶ୍ରୀ ପ୍ରହ୍ଲାଦ କୁମାର ସ୍ୱାଇଁ, ସାମ୍ବାଦିକ ଶ୍ରୀ ଗଣେଶ୍ୱର ଜେନା, ଖୋର୍ଦ୍ଧାର ଆଡ୍‌ଭୋକେଟ ଶ୍ରୀ ବିଜୟ କୁମାର ଶ୍ରେଷ୍ଠବିଷୟ, କଣ୍ଟାବାଡ଼ କଲେଜର ଅଧ୍ୟାପକ ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, ଶ୍ରୀ ଦେବରାଜ ପଣ୍ଡା, ଶ୍ରୀ ଧରଣୀଧର ସୁନ୍ଦରାୟ ପ୍ରମୁଖ ପୁସ୍ତକର ନୂତନ ସଂସ୍କରଣ ପାଇଁ ଉତ୍ସାହ ପ୍ରଦାନ କରିଥିବାରୁ କୃତଜ୍ଞତା ଜ୍ଞାପନ କରୁଛି ।

ଟାଙ୍ଗୀ ଶାନ୍ତିପ୍ରେସ୍‌ର ସ୍ୱତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ସୀମାଚଳ ମିଶ୍ର ଆଗ୍ରହର ସହିତ ଖୁବ୍ କମ ସମୟ ମଧ୍ୟରେ ପୁସ୍ତକ ମୁଦ୍ରଣ କାର୍ଯ୍ୟ କରାଇ ପାରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ରହିଲି ।

ଗଡବାଣୀକିଲେ
ପୁରୀ

**ସତ୍ୟବାଦୀ ବଳିଆରସିଂହ**
**୨୩।୨।୯୦**


ସୂଚୀ

# ପ୍ରଥମ ଅଧ୍ୟାୟ

ରଣପୁର ଓଡ଼ିଶାର ଏକ ପ୍ରାଚୀନତମ ରାଜ୍ୟ । ସୁତରାଂ ଏହାର ସୁଦୂର ଇତିହାସ ଅତି ରହସ୍ୟମୟ । ଏହି ରାଜ୍ୟ ଗଠନର ତଥ୍ୟ ଭିତ୍ତିକ ପ୍ରମାଣ ନଥିଲେ ମଧ୍ୟ କିମ୍ବଦନ୍ତୀକୁ ଆଧାର କରି ଅନେକ କଥା ଜଣାପଡ଼େ ।

ଖ୍ରୀଷ୍ଟ ଜନ୍ମର ବହୁ ବର୍ଷ ପୂର୍ବର କଥା –

ରଣାସୁର ନାମରେ ଏକ ଅସୁର ଥିଲା । ସେ ଥିଲା ଭାରି ପ୍ରତାପୀ ଓ ଶକ୍ତିଶାଳୀ । ଶିବଙ୍କ କରୁଣାରୁ ସେ ଧରାକୁ ସରା ମଣୁଥିଲା । ଶିବଙ୍କ ଦର୍ଶନ ନକଲେ ଭୋଜନ କରୁ ନଥିଲା । ସେ ପ୍ରତିଦିନ ମହାନଦୀରେ ସ୍ନାନ ସମାପନ କରି ଶରଣକୂଳ ଲମ୍ବୁକେଶ୍ୱର ମହାଦେବଙ୍କୁ ଦର୍ଶନ କରେ । ଲମ୍ବୁ ବାବା ଥିଲେ ତା'ର ଆରାଧ୍ୟ ଦେବତା । ଦେବତାଙ୍କ ପୂଜା ପରେ ମାଂସ ଭୋଜନ କରେ ଓ ମଣିନାଗ ପର୍ବତରେ ଶୟନ କରେ ।

ମଣିନାଗ ପର୍ବତ ଓ ତାହାର ଆଖ ପାଖ ଅଞ୍ଚଳ ଥିଲା ରଣାସୁରର ବାସସ୍ଥଳୀ । ଏ ସ୍ଥାନକୁ କୁହାଗଲା ରଣାସୁର ପୁର । ରଣାସୁର ପୁରରୁ ରଣପୁର ନାମକରଣ ହୋଇଛି ।

ସେ ଅନେକ ବର୍ଷ ରାଜୁତି କଲା । ବହୁ ଅନ୍ୟାୟ ଅମାନ୍ତ ବଢ଼ି ଗଲା । ତା' ଉପଦ୍ରବରେ ଲୋକେ ଲୁଚି ରହିଲେ । ଖାହି ଖାହି ଡାକ ଛାଡିଲେ । ଲୋକଙ୍କ ନିବେଦନ ଦେବୀ ଶୁଣିଲେ । ଫଳରେ ଦେବୀ ଚର୍ଚ୍ଚିକାଙ୍କ ଦ୍ୱାରା ସେ ନିହତ ହେଲା । ଦେବୀଙ୍କ ଧ୍ୟାନ ମନ୍ତ୍ରରେ ରଣାସୁର ବଧ କଥା ଜଣାପଡେ—

"ଧ୍ୟାୟେତ୍ ଖଡ୍ଗଧରାଂ ବରାଭୟକରାଂ ମୁଣ୍ଡାସ୍ରମାଳାଂ ଶିରଂ
ସର୍ପଶକ୍ତିକରାଂ ରଣାସୁର ଶବୋରୁଢ଼ାଞ୍ଚ ଙ୍କରସନାମ୍ ।
ଦନ୍ତାଶକ୍ତି କଳର୍କ୍ଷିକାଂ କୁଣ୍ଡଳସଦ୍ ମୁଣ୍ଡମାଳାଂ ଦଧାନାଂ
ମୃକ୍ତକୁର୍ଚ୍ଚଂ କରାଳ ବଦନାଂ ଦଗ୍‌ବାସିନୀଂ ଚର୍ଚ୍ଚିକାମ୍ ।।"

## ବଶ୍ରୁବାସବ

ରଣାସୁରର ନିଧନ ପରେ ରଣପୁରର ରାଜା ହେଲେ 'ବଶ୍ରୁବାସବ' । କୁହାଯାଏ, ବଶ୍ରୁବାସବ ଥିଲେ ରାଜବଂଶର ପ୍ରଥମ ରାଜା । ତାଙ୍କ ସମ୍ପର୍କରେ ବହୁ ଅଲୌକିକ କାହାଣୀ ଓ କିମ୍ବଦନ୍ତୀର ପ୍ରଚଳନ ଅଛି ।

ଗୋଟିଏ କାହାଣୀରେ ବିଶ୍ୱବାସିଙ୍କ ଜନ୍ମ ବିବରଣୀ ନିମ୍ନଲିଖିତ ଧରଣରେ :–

ଅଯୋଧ୍ୟା ରାଜ୍ୟରେ 'ଉତ୍ତାନପାଦ'ଙ୍କ ପରେ ଧ୍ରୁବ ରାଜା ହେଲେ । ସେ ବଡ ଧର୍ମଶୀଳ ଥିଲେ । ପରେ ଧ୍ରୁବଙ୍କ ବଂଶର 'ବେଣୁ' ନାମଧେୟ ରାଜା ରାଜ ସିଂହାସନ ଆରୋହଣ କଲେ ।

ବେଣୁ ବଡ ପାପୀ ଓ ଅତ୍ୟାଚାରୀ ଥିଲେ । ସେ ମତ୍ତଗର୍ବୀ ହୋଇ ନିଜକୁ ବିଷ୍ଣୁଙ୍କ ସାକ୍ଷାତ ଅବତାର ବୋଲି ପରିଚୟ ଦେଲେ ଓ ବ୍ରାହ୍ମଣମାନଙ୍କୁ ନିଜ ସେବାରେ ନିୟୋଜିତ କଲେ । ତେଣୁ ଅକାଳରେ ସେ ମୃତ୍ୟୁ ମୁଖରେ ପଡିଲେ ।

ଅତ୍ୟାଚାରୀ ରାଜା ବେଣୁର ଉତ୍ତରାଧିକାରୀ କେହି ନଥିଲେ । ତେଣୁ ବ୍ରାହ୍ମଣମାନେ ହୋମ ଯଜ୍ଞ କରି, ମୃତ ବେଣୁ ରାଜାର ବାମ ଜଙ୍ଘରୁ ଏକ ସନ୍ତାନ ଉତ୍ପନ୍ନ କରାଇଲେ । ଏହି ସନ୍ତାନ ଦେଖିବାକୁ ଶ୍ୟାମଳ ଓ ଶୀର୍ଣ୍ଣକାୟ । ତେଣୁ ରାଜ ସିଂହାସନ ପାଇଁ ତାଙ୍କୁ ଅଯୋଗ୍ୟ ମନେକରି, ନିଷାଦ ଭାବରେ ଅଭିହିତ କଲେ ଓ ଅରଣ୍ୟକୁ ନିର୍ବାସନ କଲେ ।

ଏହା ପରେ ବ୍ରାହ୍ମଣମାନେ ଆଉଥରେ ହୋମ ଯଜ୍ଞ ବଳରେ ମୃତ ବେଣୁ ମହାରାଜାଙ୍କ ଦକ୍ଷିଣ ଜଙ୍ଘରୁ ଅନ୍ୟ ଏକ ସନ୍ତାନ ଉତ୍ପନ୍ନ କରାଇଲେ । ଏହି ସନ୍ତାନ ଠାରେ ରାଜ ଲକ୍ଷଣମାନ ପରିପୂର୍ଣ୍ଣ ଥିଲି । ତେଣୁ ତାଙ୍କୁ ରାଜ ସିଂହାସନରେ ବସାଇଲେ । ଏହାଙ୍କ ନାମ 'ପୃଥୁ' ।

ପୃଥୁ ରାଜା ହୋଇ ରାଜ୍ୟ ଶାସନ କଲେ । କେହି କେହି ବିଷ୍ଣୁଙ୍କର ଚବିଶ ଅବତାର କହିଥାନ୍ତି । ପୃଥୁ ଏହି ଚବିଶଟି ଅବତାର ମଧ୍ୟରୁ ଅନ୍ୟତମ ।

× × ×

ଏଣେ ବେଣୁ ରାଜାଙ୍କ ବାମ ଜଙ୍ଘରୁ ଉତ୍ପନ୍ନ ଏବଂ ନିଷାଦ ରୂପେ ଅଭିହିତ ହୋଇଥିବା ବାଳକଟି ଅରଣ୍ୟରେ ବାସ କରୁଥିବା ଗାର୍ଗବ ଋଷିଙ୍କ ଆଶ୍ରୟ ଗ୍ରହଣ କଲି । ତାର ଗୋତ୍ର ଗାର୍ଗବ ହେଲି ।

ଗାର୍ଗବ ଋଷିଙ୍କ ଆଶୀର୍ବାଦରେ ଏହି ନିଷାଦ ଅରଣ୍ୟରେ ବାସ କରୁଥିବା ଆଦିମ ଅଧିବାସୀଙ୍କର ରାଜା ହେଲି ।

ନିଷାଦର ବଂଶରେ ଷୋହଳ ଜଣ ରାଜା ରାଜପଣ କରିଥିଲେ । ସେହି ବଂଶର ହୃଷିକେଶ ନାମକ ଯୁବକ ପୂର୍ବ ଭାରତର ଏକାମ୍ର କାନନକୁ ଚାଲିଆସି ସେଠାରେ କିଛିକାଳ ବସତି ସ୍ଥାପନ କଲେ । ହୃଷିକେଶଙ୍କର ଦୁଇଟି ପୁତ୍ର ଥିଲେ । ସେମାନଙ୍କ ନାମ ବିଶ୍ୱାବସୁ ଓ ବିଶ୍ୱବାସବ ।

କ୍ରମେ ହୃଷିକେଶ ମୃତ୍ୟୁ ମୁଖରେ ପଡ଼ିଲେ । ତାଙ୍କ ଅନ୍ତେ ବିଶ୍ୱାବସୁ ଓ ବିଶ୍ୱବାସବ ଏକାମ୍ର କାନନ ପରିତ୍ୟାଗ କରି ମହାନଦୀ କୂଳରେ ଥିବା ଏକ ଗ୍ରାମରେ ବସବାସ କଲେ ।

ବିଶ୍ୱାବସୁ ବିଷ୍ଣୁ ଭକ୍ତ ଥିଲେ । ସେ ନୀଳ କନ୍ଦରରେ ନୀଳମାଧବଙ୍କ ପୂଜା ଉପାସନା କରୁଥିଲେ । କିନ୍ତୁ କନିଷ୍ଠ ବିଶ୍ୱବାସବ ଧୂରନ୍ଧର ଶିକାରି ଥିଲେ ।

ଘଟଣାକ୍ରମେ ନୀଳକନ୍ଦରରୁ ନୀଳମାଧବ ଅନ୍ତର୍ହିତ ହେଲେ ଓ ସମୁଦ୍ରରେ ଦାରୁବ୍ରହ୍ମ ରୂପରେ ଦେଖାଦେଲେ । ନୀଳମାଧବଙ୍କ ଦର୍ଶନ ନପାଇ ବିଶ୍ୱାବସୁ ଓ ବିଶ୍ୱବାସବ ଅଥୟ ହୋଇ ଦେବତାଙ୍କୁ ଧ୍ୟାନ କରିବାକୁ ଲାଗିଲେ ।

ଦେବତାଙ୍କର ସ୍ୱପ୍ନାଦେଶ ପାଇ, ବିଶ୍ୱାବସୁ ଶ୍ରୀ କ୍ଷେତ୍ରକୁ ଗଲେ ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଶ୍ରୀ ଜଗନ୍ନାଥ ରୂପେ ଆର୍ବିଭୂତ ନୀଳମାଧବଙ୍କ ପୂଜା ଅର୍ଚ୍ଚନା କଲେ ।

କନିଷ୍ଠ ବିଶ୍ୱବାସବ ନୀଳମାଧବଙ୍କ ଆସ୍ଥାନ ଚକୋଶିଳାକୁ ରଣାସୁରର ପୁର ବା ରଣପୁରରେ ସ୍ଥାପନ କରି ପୂଜା କରିବାକୁ ସ୍ୱପ୍ନାଦେଶ ହୋଇଥିଲା । ସେ ଚକାଶିଳାକୁ ଆଣି ମଣିନାଗ ପର୍ବତରେ ସ୍ଥାପନ କରି ପୂଜା ଆରାଧନା କଲେ । ରଣାସୁର ନିହତ ହୋଇଥିବାରୁ ରାଜ ସିଂହାସନ ଶୂନ୍ୟ ଥିଲା । ସେ ସେହି ସିଂହାସନ ଅଧିକାର କରି ରଣପୁରର ରାଜା ହେଲେ । ସେତେବେଳକୁ ରାଜ୍ୟର ସୀମା ଦକ୍ଷିଣରେ ବୋଇତା ପାହାଡ଼, ପୂର୍ବରେ କଣ୍ଢାଇ ନାଳ ଓ ଚମ୍ପାଇଭୁଇଁ ପର୍ବତ, ପଶ୍ଚିମରେ କୁସୁମୀ ନଦୀ ଓ ଉତ୍ତରରେ ମହାନଦୀ ଥିଲା । ଏହି ରାଜ୍ୟର ଆୟତନ କେତେବେଳେ ପ୍ରସାରିତ ହୋଇଛି ତ କେତେବେଳେ ସଙ୍କୁଚିତ ହୋଇଛି । ରଣପୁର ରାଜବଂଶର ପ୍ରତିଷ୍ଠା ସମ୍ପର୍କରେ ଟ୍ରିବ୍ୟୁଟାରି ମାହାଲ ତତ୍ତ୍ୱାବଧାରଙ୍କ ଚିଠି ନଂ ୧୩୩୦/ପି. ତା ୨୧।୧୧।୧୮୯୨, ସେହ

ମହାତ୍ମା, କପିଳ ସଂହିତା ପ୍ରଭୃତି ଗ୍ରନ୍ଥରେ ଉଲ୍ଲେଖ ଅଛି । ଶ୍ରୀ ଗୋପୀନାଥ ସିଂହଙ୍କ ଦ୍ୱାରା ଲିଖିତ Survey and settlement operations of Ranpur Ex-State ର ୨୦ ପୃଷ୍ଠାରେ ଏହି ରାଜବଂଶର ପୂର୍ବ ଇତିହାସ ବର୍ଣ୍ଣିତ ହୋଇଛି ।

ବିଶ୍ୱାବସୁ ରଣପୁର ରାଜବଂଶର ପ୍ରଥମ ରାଜା । ସେ ଖ୍ରୀଷ୍ଟପୂର୍ବ ୧୭୨୭ ରେ ରଣପୁରରେ ରାଜତ୍ୱ ଆରମ୍ଭ କରିଥିଲେ । ନୀଳମାଧବଙ୍କ ସ୍ୱପ୍ନା-ଦେଶ ଥିଲା ଯେ ବିଶ୍ୱାବସୁ ଶ୍ରୀ କ୍ଷେତ୍ରକୁ ଯାଇ ରାଜା ଇନ୍ଦ୍ରଦ୍ୟୁମ୍ନ ସହ ପୂଜା ଅର୍ଚ୍ଚନା କରିବାର ସୁବିଧା ଲାଭ କରିବ ଓ ଭାଇ ବିଶ୍ୱାବସୁ ନୀଳମାଧବଙ୍କ ଆସ୍ଥାନ 'ଚକାଶିଳା'କୁ ରଣାସୁର ପୁରରେ ସ୍ଥାପନ କରି ପୂଜା କରିବେ ଓ ସେଠାରେ ରାଜତ୍ୱ କରିବେ । ରଣପୁର ରାଜବଂଶାବଳୀ ପୋଥି ୩ୟ ଓ ୪ର୍ଥ ପୃଷ୍ଠାରେ ଉଲ୍ଲେଖ ଅଛି ଯେ ବିଶ୍ୱାବସୁ ଚକାଶିଳାକୁ ନେଇ ରଣପୁରରେ ପହଞ୍ଚିବା ପରେ ଦୁର୍ଗା ଦେବୀ ତାଙ୍କ ସମ୍ମୁଖରେ ଆବିର୍ଭୂତା ହୋଇ କହିଲେ, "ବତ୍ସ, ରଣାସୁର ନିହତ ହେବା ପରେ ଏ ରାଜ୍ୟର ସିଂହାସନ ଖାଲି ପଡିଛି । ତୁମେ ଓ ତୁମର ବଂଶଧର ଯୁଗ ଯୁଗ ଧରି ଏଠାରେ ରାଜତ୍ୱ କର । ପର୍ବତର ପୂର୍ବ ପାର୍ଶ୍ୱରେ ଏକ ଗ୍ରାମ ସ୍ଥାପନ କରି ବସବାସ କର ।

ବିଶ୍ୱାବସୁ ଶ୍ରୀ ନୀଳମାଧବଙ୍କ ଆସ୍ଥାନ ଚକାଶିଳାକୁ ମଣିନାଗ ପର୍ବତ ଉପରେ ସ୍ଥାପନ କରି ଦୁର୍ଗା ଦେବୀଙ୍କ ମୂର୍ତ୍ତି ରଖି ପୂଜାକଲେ । ଏହି ଚକାଶିଳା ଉପରେ ବିଷ୍ଣୁ, ଶିବ ଓ ଦୁର୍ଗାଙ୍କର ବୀଜମନ୍ତ୍ର ଓ ଯନ୍ତ୍ର ଖୋଦିତ ହୋଇଥିବା ଶୁଣିବାକୁ ମିଳେ । ଏହି ଶିଳା ଏକ ମୂଲ୍ୟବାନ ପ୍ରସ୍ତର । ଏହା ଅଦ୍ୟାପି ଉପର ମଣିନାଗ ମନ୍ଦିର ମଧ୍ୟରେ ଏକ ତାମ୍ରକୁଣ୍ଡୀ ଦ୍ୱାରା ଆବୃତ ହୋଇ ରହିଅଛି । ଚକାଶିଳା ସ୍ଥାପନ ସମ୍ପର୍କରେ ଶ୍ଳୋକରେ ନିମ୍ନମତେ ବର୍ଣ୍ଣିତ ହୋଇଅଛି ।

"ନିଷାଦଃ ଶ୍ରୀକ୍ଷେତ୍ରାଦ୍ଭୁତ ଜଳଧିତଟାଦ୍ ସଦନା
ସ୍ଥିତୁର୍ଭାଂ ମୈନାକେ ଗିରି ଶିଖରେ କେତନ୍ମଣିମୟୀଂ ।
ଶିଳାମାର୍ଜର୍ଯ୍ୟୈନା ସମରପୁରେ ସଂସ୍ଥାପ୍ୟ ହିତତଃ
ସୁବର୍ଣ୍ଣାଲୋକାରେ କନକ ଜଗଦାମୋଦ ବର୍ତ୍ତତଃ ।।"

ଉପର ବର୍ଣ୍ଣିତ ଚକାଶିଳା ଏକ ତାମ୍ରକୁଣ୍ଡୀ ମଧ୍ୟରେ ଆବଦ୍ଧ ହୋଇ ରହିଥିବାରୁ ଏହା ସନ୍ଦର୍ଶନ କରିବାର ସୁଯୋଗ ନାହିଁ । ଏଠାରେ ସୁବର୍ଣ୍ଣ.

ବୈଦୂର୍ଯ୍ୟାଦି ମୂଲ୍ୟବାନ ଧାତୁ ଓ ରତ୍ନ ଗଚ୍ଛିତ ଥିବା ଅନୁମାନ କରି କେହି କେହି ତସ୍କର ମଣିନାଗ ପର୍ବତର ଶିଖର ଦେଶରେ ଅବସ୍ଥିତ ଉକ୍ତ ଡ଼ାଙ୍କୁଣୀକୁ ଖୋଳିବା ସମୟରେ ଗହ୍ୱର ମଧ୍ୟରୁ ଭୟଙ୍କର ଶବ୍ଦ ଶୁଣି ସ୍ଥାନ ଛାଡି ଚାଲି ଆସିଥିବା ଶୁଣିବାକୁ ମିଳେ । ଏଣୁ ପ୍ରକୃତ କଥା ଅଦ୍ୟାପି ରହସ୍ୟମୟ ।

ରଣପୁର ରାଜବଂଶାବଳୀରୁ ଜଣାପଡେ ରାଜା ବଶୁବାସବ ଶ୍ରୀକ୍ଷେତ୍ର ଯାଇ ଓଡିଶା ମହାରାଜାଙ୍କୁ ସମ୍ମାନିତ କରିଥିଲେ । ତାହାର ଫଳ ସ୍ୱରୂପ ତାଙ୍କଠାରୁ ଦୁଇଟି ଅଶ୍ୱ ଓ ଅନେକ ଦ୍ରବ୍ୟ ଉପହାର ପାଇଥିଲେ ।

ରଣପୁର ରାଜ ବଂଶାବଳୀର ଇତିହାସ ଓ ଓଡିଶା ଟ୍ରିବ୍ୟୁଟାରୀ ମହାଲ ତତ୍ତ୍ୱାବଧାରକଙ୍କ ଦଲିଲରୁ ମିଳିଥିବା ତଥ୍ୟକୁ ଭିତ୍ତିକରି ରାଜାମାନଙ୍କ ନାମ ଓ ସେମାନଙ୍କ ରାଜତ୍ୱକାଳ ପ୍ରଦାନ କଲି ।

| ରାଜାମାନଙ୍କ ନାମ | ରାଜତ୍ୱକାଳ | |
|---|---|---|
| ୧ - ବଶୁବାସବ | ୩୫ | ବର୍ଷ |
| ୨ - ବିକ୍ରମ ସିଂହ | ୨୧ | ” |
| ୩ - ଅନନ୍ତ ସିଂହ | ୩୫ | ” |
| ୪ - ଗୋପାଳ ସିଂହ | ୨୦ | ” |
| ୫ - ଗୋବିନ୍ଦ ସିଂହ | ୩୦ | ” |
| ୬ - ବାସୁଦେବ ସିଂହ | ୫୫ | ” |
| ୭ - ନରହରି ସିଂହ | ୧୭ | ” |
| ୮ - ଗୌରାଙ୍ଗ ସିଂହ | ୪୫ | ” |
| ୯ - ଗୋପବନ୍ଧୁ ସିଂହ | ୩୬ | ” |
| ୧୦ - ଗୌରହରି ସିଂହ | ୩୬ | ” |
| ୧୧ - ବିଷ୍ଣୁ ସିଂହ | ୨୨ | ” |
| ୧୨ - ରାମଚନ୍ଦ୍ର ସିଂହ | ୫୦ | ” |
| ୧୩ - କୃଷ୍ଣଚନ୍ଦ୍ର ସିଂହ | ୪୭ | ” |
| ୧୪ - ଦାମୋଦର ସିଂହ | ୪୦ | ” |
| ୧୫ - ଚନ୍ଦ୍ରଶେଖର ସିଂହ | ୩୭ | ” |
| ୧୬ - ସୁରପତି ସିଂହ | ୪୧ | ” |

| ରାଜାମାନଙ୍କ ନାମ | ରାଜତ୍ୱ କାଳ |
|---|---|
| ୧୭ - ଧରଣୀଧର ସିଂହ | ୩୫ ,, |
| ୧୮ - ସାରଙ୍ଗଧର ସିଂହ | ୧୫ ,, |
| ୧୯ - ଶ୍ରୀଧର ସିଂହ | ୩୨ ,, |
| ୨୦ - ଦାମୋଦର ସିଂହ | ୫୦ ,, |

ଏହି ରାଜା ଓଡଶା ମହାରାଜାଙ୍କ ଠାରୁ ଏକ ଲକ୍ଷ ହାସ ଓ ଏକ ବୈରାଖ ଉପହାର ପାଇଥିଲେ ।

| | |
|---|---|
| ୨୧ - ଜନାର୍ଦ୍ଦନ ସିଂହ | ୧୩ ବର୍ଷ |
| ୨୨ - ଗଦାଧର ସିଂହ | ୩୪ ,, |
| ୨୩ - ଗୌତମ ସିଂହ | ୫୬ ,, |
| ୨୪ - ଲକ୍ଷ୍ମଣ ସିଂହ | ୧୧ ,, |
| ୨୫ - ଗୋବନ୍ଦ ସିଂହ | ୩୬ ,, |
| ୨୬ - ପର୍ଶୁରାମ ସିଂହ | ୪୧ ,, |
| ୨୭ - ଈଶ୍ୱର ସିଂହ | ୨୫ ,, |
| ୨୮ - ଭରତ ସିଂହ | ୨୧ ,, |
| ୨୯ - ଗୋପିନାଥ ସିଂହ | ୪୦ ,, |
| ୩୦ - ଚନ୍ଦ୍ରଶେଖର ସିଂହ | ୩୨ ,, |
| ୩୧ - ଗଙ୍ଗାଧର ସିଂହ | ୨୭ ,, |
| ୩୨ - ଆନ୍ଧକନ୍ଦ ସିଂହ | ୧୮ ,, |
| ୩୩ - କାମପାଳ ସିଂହ | ୨୮ ,, |
| ୩୪ - ବାସବ ସିଂହ | ୪୪ ,, |
| ୩୫ - ନଟବର ସିଂହ | ୨୨ ,, |
| ୩୬ - ସନକ ସିଂହ | ୧୬ ,, |
| ୩୭ - ଆନ୍ଧକନ୍ଦ ସିଂହ | ୩୨ ,, |

ଏହି ରାଜା ଓଡଶା ମହାରାଜାଙ୍କ ଠାରୁ ଦୋଶାଖା ମଶାଲ ଓ ଯୋଡା ଶଙ୍ଖ ଉପହାର ପାଇଥିଲେ ।

| ରାଜାମାନଙ୍କ ନାମ | ରାଜତ୍ୱ କାଳ |
|---|---|
| ୩୮ - ଧନୁର୍ଜୟ ସିଂହ | ୩୦ ବର୍ଷ |
| ୩୯ - ନରହର ସିଂହ | ୨୧ ” |
| ୪୦ - ଶିବ ସିଂହ | ୪୦ ” |
| ୪୧ - ଅନାଥ ସିଂହ | ୩୧ ” |
| ୪୨ - ବନମାଳୀ ସିଂହ | ୩୩ ” |
| ୪୩ - କପିଳ ସିଂହ | ୨୫ ” |
| ୪୪ - ନରୋତ୍ତମ ସିଂହ | ୩୦ ” |
| ୪୫ - ମୋହନ ସିଂହ | ୩୫ ” |
| ୪୬ - ସୁଦର୍ଶନ ସିଂହ | ୩୦ ” |
| ୪୭ - କ୍ଷେତ୍ରବର ସିଂହ | ୨୫ ” |
| ୪୮ - ଚତୁର୍ଭୁଜ ସିଂହ | ୩୩ ” |
| ୪୯ - ଘନଶ୍ୟାମ ସିଂହ | ୩୭ ” |
| ୫୦ - ଅଚ୍ୟୁତ ସିଂହ | ୫୨ ” |
| ୫୧ - ମୁରାରି ସିଂହ | ୪୦ ” |
| ୫୨ - ମକରଧ୍ୱଜ ସିଂହ | ୪୨ ” |
| ୫୩ - ଅନନ୍ତ ସିଂହ | ୬୪ ” |
| | ମୋଟ ୧୭୫୩ ବର୍ଷ |

ରାଜା ଅନନ୍ତ ସିଂହଙ୍କ ରାଜତ୍ୱର ଶେଷବେଳକୁ କଳିଯୁଗର ୧୧୭ ବର୍ଷ ଅତିକ୍ରମ କରି ଯାଇଥିଲା । ସେତେବେଳେ ଶିକ୍ଷାର କୌଣସି ବ୍ୟବସ୍ଥା ନଥିଲା । ପ୍ରଧାନ ପ୍ରଧାନ ଘଟଣାମାନ ବଂଶାନୁକ୍ରମିକ ପରମ୍ପରାକ୍ରମେ ମନେ ରଖା ଯାଉଥିଲା । କୌଣସି ରାଜା ପରଲୋକ ଗମନ କଲେ ତାଙ୍କପାଇଁ ପ୍ରତିମୂର୍ତ୍ତି ନିର୍ମିତ ହେଉଥିଲା । ଅଦ୍ୟାବଧି ୧୩ ଜଣ ରାଜାଙ୍କର ପ୍ରତିମୂର୍ତ୍ତି ଚନ୍ଦ୍ର ମଣିନାଗ ମନ୍ଦିରଟିରେ ସୁରକ୍ଷିତ ହୋଇ ରହିଅଛି । ଏହା ବ୍ୟତୀତ ଅନେକ ପ୍ରତିମୂର୍ତ୍ତିର ବଳସ୍ତୂ ଘଟିଛି କମ୍ବା ଭଗ୍ନ ଅବସ୍ଥାରେ ରାଜ ଶ୍ମଶାନରେ ପଡ଼ି ରହିଛି । ଉପର୍ଯ୍ୟୁକ୍ତ ୫୩ ଜଣ ରାଜା ୧୭୫୩ ବର୍ଷ ରାଜତ୍ୱ କରିଥିଲେ । ରାଜା ଅନନ୍ତ ସିଂହଙ୍କ ପରେ ତାଙ୍କ ପୁତ୍ର ହରିହର ସିଂହ ଛବଶ ଖ୍ରୀଷ୍ଟାବ୍ଦରେ ରାଜତ୍ୱ ଆରମ୍ଭ କରିଥିଲେ ।

(୫୪) ରାଜା ଦଣ୍ଡଧର ସିଂହ ୫୫ ବର୍ଷ ରାଜତ୍ୱ କରିଥିଲେ । ସେ ଓଡ଼ିଶାର ଚାଲୁକ୍ୟ ବଂଶୀୟ ମହାରାଜାଙ୍କ ଠାରୁ ଢ଼ାଲୁଆ, ହାଜର, କରଣ, ଖୁଣ୍ଟିଆ ଓ ଗ୍ରେପଦାର ପ୍ରାପ୍ତ ହୋଇଥିଲେ ।

(୫୫) ରାଜା ଦଣ୍ଡଧର ସିଂହଙ୍କ ପୁତ୍ର ଅର୍ଜ୍ଜୁନ ସିଂହ ୪୨ବର୍ଷ ରାଜତ୍ୱ କରିଥିଲେ ।

(୫୬) ଅର୍ଜ୍ଜୁନ ସିଂହଙ୍କ ପରେ ତାଙ୍କ ପୁତ୍ର ଗୋପାଳ ସିଂହ ରାଜା ହୋଇଥିଲେ । ସେ ଗୋପାଳପୁର ଗ୍ରାମ ସ୍ଥାପନ କରିଥିଲେ ।

(୫୭) ତାଙ୍କ ପୁତ୍ର ଧନେଶ୍ୱର ସିଂହ ୨୫ ବର୍ଷ ରାଜତ୍ୱ କରିଥିଲେ । (୫୮) ତାଙ୍କ ପୁତ୍ର ନୀଳାଦ୍ରୀ ସିଂହ ୨୬ବର୍ଷ ରାଜତ୍ୱ କରିଥିଲେ । (୫୯) ତାଙ୍କ ପୁତ୍ର ମତ୍ତତପୋବନ ସିଂହ ୩୬ବର୍ଷ ରାଜତ୍ୱ କରିଥିଲେ । (୬୦) ତାଙ୍କ ପୁତ୍ର ଅନଙ୍ଗ ସିଂହ ୧୯ବର୍ଷ ରାଜତ୍ୱ କରିଥିଲେ । (୬୧; ତାଙ୍କ ପୁତ୍ର ଲକ୍ଷ୍ମଣ ସିଂହ ୪୬ବର୍ଷ ରାଜତ୍ୱ କରିଥିଲେ ।

ସେ ଜଣେ ବଡ଼ ଯୋଦ୍ଧା ଥିଲେ । ତାଙ୍କ ସମୟରେ କଙ୍ଗୋଦ ରାଜା ଇନ୍ଦ୍ରବର୍ମା ରଣପୁର ଆସିଥିଲେ । ରଣପୁର ରାଜା ଲକ୍ଷ୍ମଣ ସିଂହ ତାଙ୍କୁ ଏକ ଦନ୍ତାହସ୍ତୀ ଉପହାର ଦେଇଥିଲେ ଏବଂ ତାଙ୍କଠାରୁ ବହୁ ମୂଲ୍ୟବାନ ଅଳଙ୍କାର ପୁରସ୍କାର ସ୍ୱରୂପ ପ୍ରାପ୍ତ ହୋଇଥିଲେ ।

(୬୨) ରାଜା ଲକ୍ଷ୍ମଣ ସିଂହଙ୍କ ପୁତ୍ର ଭଗବାନ ସିଂହ ୩୦ବର୍ଷ ରାଜତ୍ୱ କରିଥିଲେ । (୬୩) ତାଙ୍କ ପୁତ୍ର ମାଧବ ସିଂହ ୨୫ବର୍ଷ ରାଜତ୍ୱ କରିଥିଲେ ।

(୬୪ ତାଙ୍କ ପୁତ୍ର ମୀନକେତନ ସିଂହ ୩୬ବର୍ଷ ରାଜତ୍ୱ କରିଥିଲେ । (୬୫) ତାଙ୍କପୁତ୍ର ଲୋକନାଥ ସିଂହ ୩୧ବର୍ଷ ରାଜତ୍ୱ କରିଥିଲେ । (୬୬) ତାଙ୍କ ପୁତ୍ର ମୁରାରି ସିଂହ ୩୫ବର୍ଷ ରାଜତ୍ୱ କରିଥିଲେ । (୬୭) ତାଙ୍କପୁତ୍ର କରୁଣାକର ସିଂହ ୩୩ବର୍ଷ ରାଜତ୍ୱ କରିଥିଲେ । (୬୮) ତାଙ୍କପୁତ୍ର ଚକ୍ରପାଣି ସିଂହ ୫୦ବର୍ଷ ରାଜତ୍ୱ କରିଥିଲେ ।

(୬୯) ରାଜା ଚକ୍ରପାଣି ସିଂହ ଖ୍ରୀଷ୍ଟ ୫୩୬ ଅବ୍ଦରେ ସ୍ୱର୍ଗାରୋହଣ କଲେ । ତାଙ୍କ ପରେ ପୁତ୍ର ଶତ୍ରୁଘ୍ନ ସିଂହ ରାଜାହେଲେ । ସେ ୩୦ବର୍ଷ ରାଜତ୍ୱ କରିଥିଲେ ।

(୭୦) ରାଜା ଶତ୍ରୁଘ୍ନ ସିଂହଙ୍କ ପରେ ପୁତ୍ର ପୁରୁଷୋତ୍ତମ ସିଂହ ୪୮ବର୍ଷ ରାଜତ୍ୱ କରିଥିଲେ । ତାଙ୍କର କଙ୍ଗୋଦ ରାଜା ଭାନୁବର୍ଦ୍ଧନ ଦେବଙ୍କ ସହ

ସୁସମ୍ପର୍କ ଥିଲା । ସେ ତାଙ୍କୁ ରଣପୁରକୁ ନିମନ୍ତ୍ରଣ କରିଥିଲେ । ଏହା ରଣପୁର ରାଜବଂଶ ବଳୀରୁ ଜଣାପଡେ ।

**ମଣିନାଗ** – କଙ୍ଗୋଦ ମହାରାଜା ଭାନୁବର୍ଦ୍ଧନ ଦେବଙ୍କ ଦ୍ୱାରା ରଣପୁରସ୍ଥିତ ମଣିନାଗଙ୍କ ପୂଜା ପାଇଁ ଗ୍ରାମ ଦାନ ସ୍ୱରୂପ ଦିଆଯାଇଥିବା ଏକ ତାମ୍ର ଫଳକରୁ ଜଣାପଡେ । O.H.R.J Volume II ପ୍ରଥମ ଖଣ୍ଡର ୩୨ ପୃଷ୍ଠାରେ ଓଲମିଂହରୁ ମିଳିଥିବା 5½" × 4" ପରିମିତ ତାମ୍ର ଫଳକରେ ଏ ସମ୍ପର୍କରେ ଉଲ୍ଲେଖ ରହିଛି । ଏହି ତାମ୍ର ଫଳକର ସମ୍ମୁଖଭାଗର ୧୧ ଧାଡି ଓ ପଶ୍ଚାତ ଭାଗର ୮ ଧାଡି ଲେଖାକୁ ଗବେଷକ ପଣ୍ଡିତ ସତ୍ୟନାରାୟଣ ରାଜଗୁରୁ ପାଠକରି ଏହାର ଅନୁବାଦ କରିଛନ୍ତି । ନିମ୍ନରେ ଉକ୍ତ ଅନୁବାଦର ସାରାଂଶ ପ୍ରଦାନ କଲି । ମହାରାଜା ଭାନୁବର୍ଦ୍ଧନ "ଅମ୍ବିକା ମଣିନାଗେଶ୍ୱର ଭଟ୍ଟାରକ"ଙ୍କ ପାଇଁ କୁମ୍ଭାରକ—ସୂନାଖଳା ଗ୍ରାମ ଦାନ ସ୍ୱରୂପ ଦେଇଥିଲେ । ମଣିନାଗ ପର୍ବତ ଉପରେ ଅମ୍ବିକା (ଦୁର୍ଗା) ଓ ମଣିନାଗେଶ୍ୱର ଭଟ୍ଟାରକ (ଶିବ ଉଭୟ ପୂଜା ପାଉଥିଲେ । ମଣିନାଗେଶ୍ୱର ଓ ଅମ୍ବିକାଙ୍କ ପୂଜାବିଧି ପାଇଁ ଦାନ କରାଯାଇଥିବା ଗ୍ରାମ ଆଧୁନିକ କୁମ୍ଭାରୀ (ସମ୍ପ୍ରତି ବଡ କୁମ୍ଭାରୀ ଓ ସାନ କୁମ୍ଭାରୀ ଗ୍ରାମରୂପେ ପରିଚିତ) ଓ ସୁନାଖଳା (ରାଜ-ସୁନାଖଳା) ବୋଲି ପ୍ରମାଣ କରାଯାଇପାରେ । ଉଭୟ ଗ୍ରାମ ପରସ୍ପର ସଲଗ୍ନ ଅଟନ୍ତି ଏବଂ ରଣପୁର ଗଡଠାରୁ ଯଥାକ୍ରମେ ଏଗାର ଓ ଦଶ କିଲୋମିଟର ଦୂର ବ୍ୟବଧାନରେ ଅବସ୍ଥିତ ।

ରଣପୁରସ୍ଥ ମଣିନାଗଙ୍କ ପୂଜା ସମ୍ପର୍କରେ ଗୋଟିଏ ଅତି ମୂଲ୍ୟବାନ ଅନୁଶାସନ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଦ୍ୱାରା ଆବିଷ୍କୃତ ହୋଇଛି । ଏଥିରେ ଖୋଦିତ ଅଛି :— କୋଷାଳୀର ଅଷ୍ଟାଦଶ ଅଧୀଶ୍ୱର ଶ୍ରୀ ଲୋକ ବିଗ୍ରହ ନାମକ ଜଣେ ରାଜା ୨୦୦ ଗୁପ୍ତାବ୍ଦ (ଖ୍ରୀଷ୍ଟାବ୍ଦ ୫୨୦) ରେ ମଣିନାଗେଶ୍ୱରଙ୍କ ବଳି ଓ ଚରୁ ଉଦ୍ଦେଶ୍ୟରେ ମୈତ୍ରାୟଣୀୟ ବ୍ରାହ୍ମଣଙ୍କୁ ଉର୍ଦ୍ଧ୍ୱଶୃଙ୍ଗ ନାମକ ଗୋଟିଏ ଗ୍ରାମ ଦାନ କରିଥିଲେ । ଏହା ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ "ନାଗ ଇତିହାସ"ର ୧୦୭ ପୃଷ୍ଠାରେ ଉଲ୍ଲେଖ ରହିଛି ।

ମଣିନାଗ ପର୍ବତ ଉପରେ ମଣିନାଗେଶ୍ୱର ଓ ଦୁର୍ଗାଙ୍କର ପୂଜା ଅନୁଷ୍ଠିତ ହେଉଥିଲା । ତତ୍କାଳୀନ ମଣିନାଗ ପୂଜା ପ୍ରାଧାନ୍ୟ ବିସ୍ତାର କରି

ଥିବାରୁ ରଣପୁର ରାଜାଙ୍କ ବ୍ୟକ୍ତିଗତ କଚେରୀ, ଓଡିଶା ଭୂଭାଗରେ ମହାରାଜା ମାନେ ମଣିନାଗ ପୂଜାପ୍ରତି ଆକର୍ଷିତ ହୋଇ ଗ୍ରାମ ଦାନ ଦେଇଥିବା ଅନୁମାନ କରାଯାଏ ।

ରାଜା ପୁରୁଷୋତ୍ତମ ସିଂହ ତାଙ୍କ ରାଜତ୍ୱର ଶେଷାର୍ଦ୍ଧରେ ମହାରାଜା ଯଯାତି କେଶରୀଙ୍କ ଠାରୁ ମୟୂରଝୁଲ ଗ୍ରାମର ଉପହାର ପାଇଥିଲେ । ଫଳରେ ଏହାର ସ୍ମାରକୀ ସ୍ୱରୂପ ମୟୂରଝୁଲିଆ ଗ୍ରାମ ସ୍ଥାପନ କରିଥିଲେ । ଏହା ଅଧୁନା ରଣପୁର ରାଜ୍ୟର ପ୍ରଧାନ ଗ୍ରାମମାନଙ୍କ ମଧ୍ୟରୁ ଅନ୍ୟତମ ଅଟେ ।

(୭୧) ରାଜା ପୁରୁଷୋତ୍ତମ ସିଂହଙ୍କ ପରେ କପିଳ ସିଂହ ୩୭ ବର୍ଷ ରାଜତ୍ୱ କରିଥିଲେ । ସେ କପିଳେଶ୍ୱରପୁର ଗ୍ରାମ ଓ କପିଳେଶ୍ୱର ମନ୍ଦିର ସ୍ଥାପନ କରିଥିଲେ । କପିଳେଶ୍ୱରପୁର ଗ୍ରାମ ଗଡ଼ ମାଣଗ୍ରାମର ଅଂଶ ବିଶେଷ । ଖୋର୍ଦ୍ଧାରେ ଭୋଇ ବଂଶ ରାଜତ୍ୱ ଆରମ୍ଭ ପୂର୍ବରୁ କପିଳେଶ୍ୱରପୁର ଗ୍ରାମ ରଣପୁର ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ପରେ ଗଜପତିଙ୍କ ରାଜ୍ୟ ଅନ୍ତର୍ଭୁକ୍ତ ହୋଇ ଗ୍ରାମର ନାମ ଗଡମାଣଗ୍ରାମ ହୋଇଥିଲା । ଏଠାରେ ଥିବା କପିଳେଶ୍ୱର ମନ୍ଦିରରେ ଅଦ୍ୟାପି ରଣପୁର ରାଜାଙ୍କ ନାମରେ ପୂଜାପାଠ କରାଯାଏ ।

(୭୨) କପିଳ ସିଂହଙ୍କ ପରେ ତାଙ୍କପୁତ୍ର ସୁରମଣି ସିଂହ ୫୦ବର୍ଷ ରାଜତ୍ୱ କରିଥିଲେ । ସେ ମହାରାଜା କୋଶଳ କେଶରୀଙ୍କ ଠାରୁ ଦୁଇଗୋଟି ଅଶ୍ୱ ଓ ନାଗରା ବାହାଳୀ ଉପହାର ସ୍ୱରୂପ ପାଇଥିଲେ ।

(୭୩) ରାଜା ସୁରମଣି ସିଂହଙ୍କ ପୁତ୍ର ଦୈତାରି ସିଂହ ୪୨ବର୍ଷ ରାଜତ୍ୱ କରିଥିଲେ । (୭୪) ତାଙ୍କପୁତ୍ର ସଦାଶିବ ସିଂହ ୩୦ବର୍ଷ ରାଜତ୍ୱ କରିଥିଲେ । (୭୫) ତାଙ୍କପୁତ୍ର ମୁକୁନ୍ଦ ସିଂହ ୩୫ବର୍ଷ ରାଜତ୍ୱ କରିଥିଲେ । (୭୬) ତାଙ୍କ ପୁତ୍ର କୃତ୍ତିବାସ ସିଂହ ୨୫ବର୍ଷ ରାଜତ୍ୱ କରିଥିଲେ । (୭୭) ତାଙ୍କପୁତ୍ର ପରମାନନ୍ଦ ସିଂହ ୩୪ବର୍ଷ ରାଜତ୍ୱ କରିଥିଲେ । (୭୮) ତାଙ୍କପୁତ୍ର ମାନକଣ୍ଠ ସିଂହ ୪୦ବର୍ଷ ରାଜତ୍ୱ କରିଥିଲେ । (୭୯) ତାଙ୍କପୁତ୍ର କମଳ ସିଂହ ୩୨ବର୍ଷ ରାଜତ୍ୱ କରିଥିଲେ ।

(୮୦) ରାଜା କମଳ ସିଂହଙ୍କ ପରେ ପୁତ୍ର ପଦ୍ମନାଭ ସିଂହ ରାଜା ହୋଇଥିଲେ । ସେତେବେଳେ ମର୍କତ କେଶରୀ ଓଡିଶାର ରାଜା ଥିଲେ । ସେ ନଜର ବାରତ୍ୱ ପାଇଁ ତାଙ୍କଠାରୁ ବହୁ ମୂଲ୍ୟବାନ ଅଳଙ୍କାର ଓ ବସ୍ତ୍ର ଉପହାର ସ୍ୱରୂପ ପାଇଥିଲେ । ସେ ୪୫ବର୍ଷ ରାଜତ୍ୱ କରିଥିଲେ ।

(୮୧) ରଜା ପଦ୍ମନାଭ ସିଂହଙ୍କ ପରେ ଅଚ୍ୟୁତ ସିଂହ ୩୨ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଅଚ୍ୟୁତପୁର ଗ୍ରାମ ସ୍ଥାପନ କରିଥିଲେ ।

(୮୨) ରାଜା ଅଚ୍ୟୁତ ସିଂହଙ୍କ ପୁତ୍ର ଗଦାଧର ସିଂହ ୪୧ବର୍ଷ ରାଜତ୍ୱ କରି-ଥିଲେ । ଗଦାଧର ସିଂହ ଯୁବରାଜ ଥିବାବେଳେ ତାଙ୍କର ବିବାହ ହୋଇଥିଲା । ସେ ବିହାର ଅନ୍ତର୍ଗତ ଧଳଭୂମିର ରାଜସୁତା ପ୍ରଭାବତୀ ଦେବୀଙ୍କୁ ବିବାହ କରି ରଣପୁର ପ୍ରତ୍ୟାଗମନ କରୁଥିଲେ । ପଥ ମଧ୍ୟରେ କପିଶା ନଦୀ କୂଳରେ ଶୁଣିବାକୁ ପାଇଲେ ଗୌଡ ବା ବଙ୍ଗ ଦେଶର ପଠାଣ ସେନା ଉତ୍କଳ ଆକ୍ରମଣ ପାଇଁ ମସୁଧା କରୁଛନ୍ତି । ଏହି ସମ୍ବାଦ ଓଡିଶାର ମହାରାଜାଙ୍କୁ ଜଣାଇବା ଆବଶ୍ୟକ ହେଉଥିଲା । ଏଣୁ ଯୁବରାଜ ଗଦାଧର ସାଥିରେ ଥିବା ଅଳ୍ପ କେତେ ଜଣ ସୈନ୍ୟଙ୍କ ସହ ନବବିବାହିତା ରାଜକେମାଙ୍କୁ ସେଠାରେ ଛାଡି ଓଡିଶା ମହାରାଜାଙ୍କୁ ସମ୍ବାଦ ଦେବାପାଇଁ ଏକାକୀ ଅଶ୍ୱପୃଷ୍ଠରେ ବାରବାଟୀ ଦୁର୍ଗକୁ ଚାଲିଆସିଲେ । ଏଣେ ବଙ୍ଗର ପଠାଣ ସେନା ଓଡିଶା ଆକ୍ରମଣ କଲେ ।

ଯୁବରାଣୀ ପ୍ରଭାବତୀ ଅଳ୍ପ କେତେଜଣ ସୈନ୍ୟଙ୍କ ସହ ନିଜ ସ୍ୱାମୀଙ୍କ ଅପେକ୍ଷାରେ ଥାଆନ୍ତି । ସ୍ୱାମୀ ରଣପୁର ଯୁବରାଜ କିମ୍ବା ଓଡିଶା ମହାରାଜା ନଫେରିବାରୁ ଜୀବନର ସମସ୍ତ ଆଶା ପରିତ୍ୟାଗ କରି ସେ ନିଜେ ପୁରୁଷର ଛଦ୍ମ ବେଶରେ ଯୁଦ୍ଧକୁ ବାହାରି ପଡିଲେ । ନିଜ ସୈନ୍ୟଙ୍କ ଦ୍ୱାରା ତାମ୍ରଲିପିର (ଆଧୁନିକ ମେଦିନୀପୁର ଜିଲ୍ଲା ପୂର୍ବେ ଏହା ଓଡିଆ ଅଞ୍ଚଳ ଥିଲା) ଆଦିବାସୀ ମାନଙ୍କ ନିକଟରେ ଘୋଷଣା କଲେ ଯେ ଓଡିଶା ଯୁବରାଜ ନିଜେ ବଙ୍ଗର ପଠାଣ ସେନାଙ୍କ ସହ ଯୁଦ୍ଧ କରିବାକୁ ଆସିଛନ୍ତି । ଏହା ଶୁଣି ସ୍ଥାନୀୟ ଆଦିବାସୀ ମାନଙ୍କ ମନରେ ଅପୂର୍ବ ସାହାସ ଓ ଶକ୍ତିର ସଞ୍ଚାର ହେଲା । ନିଜେ ଓଡିଶା ଯୁବରାଜ ଯୁଦ୍ଧକୁ ଆସିଥିବାରୁ ସେମାନେ ସଂଗଠିତ ହୋଇ ଯୁଦ୍ଧରେ ମାତି ଉଠିଲେ ଓ ଜୟ ଯୁବରାଜ ଙ୍କ ଜୟ ଧ୍ୱନିରେ ଗଗନ ମଣ୍ଡଳ ପ୍ରକମ୍ପିତ କଲେ । ଫଳରେ ଗୌଡ ଦେଶ ବଙ୍ଗର ପଠାଣ ସେନା ଛତ୍ରଭଙ୍ଗ ଦେଇ ପଳାୟନ କରିବାକୁ ଲାଗିଲେ ।

ଉପରୋକ୍ତ ଖଣ୍ଡଯୁଦ୍ଧ ଅବସାନର ଅବ୍ୟବହିତ ପୂର୍ବରୁ ଓଡିଶା ମହାରାଜା ଓ ରଣପୁର ଯୁବରାଜ ଗଦାଧର ସିଂହ ବହୁ ଅଶ୍ୱାରୋହୀ ଓ ଗଜାରୋହୀ ସୈନ୍ୟ ସହ ସେଠାରେ ପହଞ୍ଚି ଦେଖିଲେ ଜୟ ଯୁବରାଜ ଧ୍ୱନିରେ ଗଗନ ମଣ୍ଡଳ ପ୍ରକମ୍ପିତ ହେଉଛି ଏବଂ ଗୌଡ ଦେଶର ପଠାଣ ସେନା

ପରାଜିତ ହେବାରେ ଲାଗିଛନ୍ତି । ଏଥିରେ ଓଡ଼ିଶା ମହାରାଜା ଆଶ୍ଚର୍ଯ୍ୟ ହୋଇ ଏ ରଣଦକ୍ଷ ଯୁବରାଜ କିଏ ବୋଲି ପରିଚୟ ଜାଣିବାକୁ ଚାହିଁଲେ । ଫଳରେ ଧଳଭୂମି ରାଜକେମା ଛଦ୍ମପୋଷାକ ଉତ୍ତରଣ କରି ନିଜ ପରିଚୟ ଦେଲେ । ଜଣେ ନବ ବିବାହିତା ରାଜକେମା ମାତୃଭୂମି ପାଇଁ ଯୁବରାଜର ଛଦ୍ମବେଶରେ ଶତ୍ରୁ ସୈନ୍ୟଙ୍କୁ ପରାଜିତ କରିଥିବାରୁ ମହାରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ସେତେବେଳେ ଧଳଭୂମି, ବାରଭୂମି, ସିଂହଭୂମି, ସରେଇକଳା, ଖରସୁଆଁ ଓ ତାମ୍ରଲିପ୍ତ (ମେଦିନୀପୁର ଜିଲ୍ଲା) ଓଡ଼ିଶା ମହାରାଜାଙ୍କ ଅଧୀନତା ସ୍ୱୀକାର କରୁଥିଲେ । ଉକ୍ତ ଅଞ୍ଚଳ ମଧ୍ୟ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଥିଲା । କାଳକ୍ରମେ ତାହା ବିହାର ଓ ପଶ୍ଚିମବଙ୍ଗ ପ୍ରଦେଶ ଅନ୍ତର୍ଭୁକ୍ତ ହୋଇଛି । ଏହି କାହାଣୀକୁ କବି ମାଳକଣ୍ଠ ଦାଶ ଏହିପରି ବର୍ଣ୍ଣନା କରିଛନ୍ତି :-

"ଧଳଭୂମି କେମା ଯେବେଠି ରଣପୁର କୁମାରେ
ବରି, ମଧୁଚନ୍ଦ୍ରଯ୍ୟା—ବିଧାନେ ହେଲେ କପିଶା କୂଳେ,
ଶୁଣିଲେ ଗଉଡ଼ – କଟକେ ସଜ ପଠାଣ ସେନା,
ଅଙ୍କଟେ ପଶିବେ ଉତ୍କଳେ କରିଛନ୍ତି କଳ୍ପନା
ସଦେଶ ପେଶିଲେ କଟକେ ଗଲେ ସାଗର ତୀରେ,
ତାମ୍ରଲିପ୍ତ-ସେନା-ବାହିନୀ ସଜ କଲେ ସତ୍ୱରେ,
ଗଙ୍ଗାନ୍ଦେହ ଝାଙ୍କ ରହିଲେ, ଯେବେ ଗଉଡ଼ ସେନା
ଗୋପନେ ବାହାର ହୋଇଲେ ଗର୍ବେ ହୋଇ ପୂରୁଣା
ତ୍ରିବେଣୀ କଟକେ କୁମାର କଲେ ସଇନ ସଜ,
ପଛରୁ ଭେଟିଲେ ବଇରି ଧରି ଉତ୍କଳ ଧ୍ୱଜ,
ବିଷମେ ପଠାଣ ଅରାତି ପଡ଼ି, ଅଳପ ସ୍ଥିତି
ଛତ୍ରଭଙ୍ଗେ ସନ୍ଧି ଆଚରି, ଗଲେ ଗଉଡ଼ ବରଜି
ନୁହନ୍ତି କୁମାର, କୁମାରୀ ସେହୁ, ପଡ଼ିଲା ଜଣା,
ଉତ୍କଳ-ରାଜନ ସହିତେ ଥିଲେ କୁମାର ସିନା ।
ଆସିଲେ କୁମାରୀ, ଉତ୍କଳ ରାଣୀ ତାହାଙ୍କୁ କୋଳେ,
ଧରି, ସନମାନେ ବହିଲେ ବଧୂ ସ୍ୱତା-ସଦାରେ,
ବିବାହ-ଉତ୍ସବ ବଢ଼ିଲା ବାରବାଟୀ-ମହଲେ
ସାମନ୍ତ ଶେଖର ପଦବୀ ଦେଲେ ସେ ରଣପୁରେ ।
'ନାଗମଣି' ଶାଢ଼ୀ ପାଇଲେ ଧଳଭୂମି ଦୁହିତା,
'ମଣିନାଗ' ନାମ ବହିଲେ ରଣପୁର ଦେବତା ।

ବୀରବାଣୀ ପ୍ରଭାବତୀ ଦେବୀଙ୍କ ପାଇଁ କେବଳ ରଣପୁର ନୁହେଁ ସମଗ୍ର ଓଡ଼ିଶା ଗର୍ବିତ । ତାଙ୍କର ଅତୁଳନୀୟ ଶୌର୍ଯ୍ୟ ଓ ବୀରତ୍ୱ ଯୁଗ ଯୁଗ ଧରି ନାରୀଜାତିର ପ୍ରେରଣାର ଉତ୍ସ ହୋଇ ରହିବ ।

(୮୩) ରାଜା ଗଦାଧର ସିଂହଙ୍କ ପରେ ତାଙ୍କ ପୁତ୍ର ବୈରାଗୀ ସିଂହ [illegible] ରାଜତ୍ୱ କରିଥିଲେ ।

(୮୪) ରାଜା ବୈରାଗୀ ସିଂହଙ୍କ ପରେ ପୁତ୍ର ବାଙ୍କନିଧି ସିଂହ ରଣପୁରର ରାଜା ହୋଇଥିଲେ । ସେ ଜଣେ ଧର୍ମପରାୟଣ ରାଜା ଥିଲେ । ତାଙ୍କ ରାଣୀଙ୍କ ନାମ ଥିଲା ତାରା ଦେବୀ । ରାଜା ରାଣୀ ସେମାନଙ୍କ ନାମରେ ବାଙ୍କ-ତରା ବ୍ରାହ୍ମଣ ଶାସନ ସ୍ଥାପନ କରିଥିଲେ । ଏହି ଶାସନ କଣ୍ଟିଲୋ ନିକଟସ୍ଥ କୁସୁମି ନଦୀ କୂଳରେ ଅବସ୍ଥିତ ।

ଶ୍ରୀ ଉଦୟନାଥ ଦାସ 'ଖଣ୍ଡପଡ଼ା ଇତିହାସ'ର ୧୯ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ, "ଖଣ୍ଡପଡ଼ା ରାଜ୍ୟ ସ୍ଥାପନ ପୂର୍ବରୁ ରଣପୁର ରାଜ୍ୟ ନୀଳ-ମାଧବଙ୍କ ଦକ୍ଷିଣ ଦ୍ୱାର ପର୍ଯ୍ୟନ୍ତ ଥିଲା । ରଣପୁର ରାଜା ବାଙ୍କନିଧି ଓ ରାଣୀ ତାରା ଦେଈ ଦୁହିଁଙ୍କ ନାମକରଣରେ "ବାଙ୍କତରା ଶାସନ" କୁସୁମି ନଦୀ କୂଳରେ ପ୍ରତିଷ୍ଠିତ ହୋଇଥିଲା । × × × ଶ୍ରୀ ନୀଳମାଧବଙ୍କ ପୂର୍ବଦ୍ୱାର ଗଜପତି ମହାରାଜାଙ୍କ ଓ ପଶ୍ଚିମ ଦ୍ୱାର ବୌଦ ରାଜାଙ୍କ ଅଧିକାରଭୁକ୍ତ ଥିଲା । ସେତେବେଳେ ଦଶପଲ୍ଲା ରାଜ୍ୟ ସ୍ଥାପିତ ହୋଇ ନଥିଲା । ଏଥିରୁ ଜଣାପଡ଼େ ବାଙ୍କନିଧି ସିଂହଙ୍କ ପର୍ଯ୍ୟନ୍ତ ରଣପୁର ଏକ ବୃହତ୍ ରାଜ୍ୟହୋଇ ତିଷ୍ଠି ଥିଲା ।

ରାଜା ବାଂକନିଧି ସିଂହ ଖ୍ରୀଷ୍ଟାବ୍ଦ ୧୧୦୧ରୁ ୧୧୨୮ ପର୍ଯ୍ୟନ୍ତ [illegible] ୨୭ବର୍ଷ ରଣପୁରର ରାଜାଥିଲେ । ସେ ବଡ଼ ଦୁର୍ଦ୍ଧର୍ଷ ଥିଲେ । ସେ ଓଡ଼ିଶା ମହାରାଜାଙ୍କ ଅଧୀନତା ସ୍ୱୀକାର କଲେ ନାହିଁ । ଫଳରେ ଓଡ଼ିଶା ମହାରାଜାଙ୍କ ସୈନ୍ୟ ଓ ରଣପୁର ରାଜାଙ୍କ ସୈନ୍ୟ ସହ ଚିଲିକା କୂଳବର୍ତ୍ତୀ ଗଡଖୋରଦା ଠାରେ ଯୁଦ୍ଧ ହୋଇ ରଣପୁର ରାଜା ପରାଜିତ ହୋଇଥିଲେ । ଗଡ ଖୋରଦାର ନିକଟବର୍ତ୍ତୀ ଏକ ପାହାଡ଼ର ପାଦଦେଶରେ ଏହି ଯୁଦ୍ଧ ହୋଇଥିଲା । ଏହି ସ୍ଥାନକୁ ବାଦ ପଦର କୁହାଯାଉଛି । ଏହି ବାଦ ବା ଯୁଦ୍ଧ ଯୋଗୁଁ ରଣପୁର ରାଜ୍ୟର ପୂର୍ବସୀମା ଜଂକିଆ ଗଡସାହି ପର୍ଯ୍ୟନ୍ତ ସଙ୍କୁଚିତ ହୋଇଥିଲା । ଏକ ସନ୍ଧିହୋଇ ଉଭୟ ରାଜ୍ୟ ଶାନ୍ତ ଫେରିଥିଲା ।

ଏହି ଘଟଣାର କିଛି ବର୍ଷ ପରେ ରଣପୁର ରାଜା ବାଙ୍କନିଧି ସିଂହ ଓଡ଼ିଶା ମହାରାଜାଙ୍କୁ କର କଉଡ଼ି ଦେଲେ ନାହିଁ । ଫଳରେ ଓଡ଼ିଶା ମହାରାଜା ରଣପୁରରୁ କର ଆଦାୟ ପାଇଁ ବୌଦ ରାଜା ଅର୍ଜୁନ ଭଞ୍ଜଙ୍କୁ ନିର୍ଦ୍ଦେଶ ଦେଲେ । କିନ୍ତୁ ରାଜା ବାଙ୍କନିଧି ସିଂହ ବୌଦ ରାଜାଙ୍କୁ କଉଡ଼ି କର ଦେବାତ ଦୂରକଥା ତାଙ୍କୁ ସମ୍ମାନ ମଧ୍ୟ କଲେନାହିଁ । ଏହା ଶ୍ଳୋକରେ ନିମ୍ନମତେ ପ୍ରକାଶ ପାଇଛି ।

"ତଦ୍ଦଂଶୋ ନୃପରାଜଶାସମ୍ମାନ ନଶଷାତତଃ
ବୌଦ ଭଞ୍ଜ ବରଂଚ ଦତ୍ତ୍ୱା ସତ୍କାର ମାକରୋତ୍"

ବୌଦ ରଜା ଅର୍ଜୁନ ଭଞ୍ଜ ଅସମ୍ମାନିତ ହେବାରୁ ରଣପୁର ଆକ୍ରମଣ କରି ବାଙ୍କନିଧି ସିଂହଙ୍କୁ ପରାସ୍ତ ଓ ବନ୍ଦୀ କଲେ । ବାଙ୍କନିଧି ସିଂହ ବନ୍ଦୀ ଅବସ୍ଥାରେ ବୌଦ ଯାଉଥିବା ସମୟରେ ଲୁଚି ପଳାୟନ କଲେ । ଶୁଣାଯାଏ ଘୋର ଅରଣ୍ୟ ମଧ୍ୟରେ ଖ୍ରୀ ୧୮୫୧ଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା । ଏହି ଘଟଣା ପରେ ରଣପୁର ରାଜ୍ୟର ଦଶପଲ୍ଲା ଅଞ୍ଚଳ ବୌଦ ରାଜ୍ୟ ଅନ୍ତର୍ଭୁକ୍ତ ହୋଇଥିଲା । ପରେ ବୌଦ ରାଜବଂଶର ଶାଳ ଭଞ୍ଜ ଦଶପଲ୍ଲା ରାଜ୍ୟ ସ୍ଥାପନ କରିଥିଲେ । ଆଧୁନିକ ନୟାଗଡ଼ ରାଜ୍ୟ ମଧ୍ୟ ରଣପୁର ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ମଧ୍ୟପ୍ରଦେଶ ରେବା ଅଞ୍ଚଳର ଜନୈକ ବଘେଲ ବଂଶୀୟ ରାଜପୁତ୍ର ସୂର୍ଯ୍ୟମଣି ସିଂହ ପୁରୀ ତୀର୍ଥକୁ ଆସିବା ବାଟରେ ଏକ ଉପଦ୍ରବ କରୁଥିବା ବ୍ୟାଘ୍ରକୁ ନିହତ କରି ସେଠା ଜନସାଧାରଣଙ୍କ ଅନୁରୋଧରେ ସେମାନଙ୍କର ରାଜା ହୋଇଥିଲେ । ଫଳରେ ଏହା ରଣପୁର ରାଜ୍ୟର କର୍ତ୍ତୃତ୍ୱରୁ ସ୍ୱତନ୍ତ୍ର ହୋଇଥିଲା ।

(୮୫) **ପିତାମ୍ବର ସିଂହ** – ପିତାଙ୍କ ମୃତ୍ୟୁ ପରେ ଯୁବରାଜ ପିତାମ୍ବର ସିଂହ ଓଡ଼ିଶା ମହାରାଜାଙ୍କ ଅଧୀନତା ସ୍ୱୀକାର କରି ବୌଦ ରାଜାଙ୍କ ଠାରୁ ରଣପୁର ଫେରି ପାଇଲେ । କିନ୍ତୁ ରଣପୁର ରାଜ୍ୟର ପୂର୍ବ ଆୟତନ ବଜାୟ ରହିପାରିଲା ନାହିଁ । ଫଳରେ ପୂର୍ବରୁ ଥିବା ବୃହତ ରଣପୁର ରାଜ୍ୟ ସଙ୍କୁଚିତ ହୋଇଗଲା । ସେ ୫୫ବର୍ଷ ରାଜତ୍ୱ କରିଥିଲେ ।

(୮୬) **ଶ୍ରୀ ବୈକୁଣ୍ଠନାଥସିଂହ**–ଖ୍ରୀ:୧୧୮୩ରୁ ୧୨୩୭ଅଙ୍କ ପର୍ଯ୍ୟନ୍ତ ରଣପୁରର ରାଜା ଥିଲେ । ସେ ବଡ଼ ଶିବଭକ୍ତ ଥିଲେ । ରାଜ୍ୟର ବହୁଳ ଶିବ ମନ୍ଦିରରୁ ତତ୍ତ୍ୱୟରୁ ପାଦୁକ ଆସୁଥିଲା । ରାଜା ସ୍ନାନ ସମାପ୍ତ ପରେ ଶିବଙ୍କ ପାଦୁକ

ସେବନ କରୁଥିଲେ । ସେ ରାଜ୍ୟର ବଢ଼େନ୍ନ ଶିବ ମନ୍ଦିରରେ ଠାକୁରଙ୍କ ସେବା ପୂଜା ପାଇଁ ଜମିବାଡ଼ ଖଞ୍ଜିଥିଲେ ।

(୮୭) ରାଜା ବୈକୁଣ୍ଠନାଥ ସିଂହଙ୍କ ପରେ ତାଙ୍କପୁତ୍ର ଜଗନ୍ନାଥ ସିଂହ ୫୨ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଅପୁତ୍ରିକ ଥିଲେ । ଫଳରେ ପୁତ୍ର କାମନା କରି ନିଜ ରାଜ୍ୟ ଅନ୍ତର୍ଗତ ସିକୋ ଗ୍ରାମର ବାଙ୍କନିଧି ଦେବଙ୍କ ପାଖରେ ଅଧିଆ ପଡ଼ିଲେ । ଗଭୀର ନିଷ୍ଠାର ସହ ଅଧିଆ ପଡ଼ିବା ପରେ ଦେବ ଦେବ ମହାଦେବ ରାଜାଙ୍କ ପ୍ରାର୍ଥନା ଶୁଣିଲେ । ମହାଶମ୍ଭୁ ନିଶାର୍ଦ୍ଧରେ ରାଜାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ ବିଭୂତି ପ୍ରଦାନ କଲେ ଏବଂ କହିଲେ "ତୁମେ ଏହି ବିଭୂତି ଲଉ ତୁମ୍ବ ମଧ୍ୟରେ ଦଶମାସ ରଖି ପୂଜା କଲେ ପୁତ୍ରଲାଭ କରିବ । ଶୁଣାଯାଏ ରାଜା ଦେବ ଆଜ୍ଞା ପାଳନ କରି ବିଭୂତିକୁ ଲଉ ତୁମ୍ବ ମଧ୍ୟରେ ରଖି ପ୍ରତିଦିନ ପୂଜା କଲେ । ଦଶମାସ ପରେ ତୁମ୍ବ ମଧ୍ୟରୁ ଦୁଇଟି ଯାଆଁଳା ପୁତ୍ର ଜନ୍ମଲାଭ କଲେ । ସେମାନଙ୍କ ନାମ ସ୍କନ୍ଦ ସିଂହ ଓ ମଙ୍ଗଳ ସିଂହ ଗର୍ଭଜାତ । ମାତା ନଥାଇ ପୁତ୍ର ଜନ୍ମଲାଭ କରିଥିବାରୁ ଏ ପରିବାରକୁ ଅଯୋନି ସମ୍ଭୂତ କୁହାଯାଏ ।

କବି ଶ୍ରୀଧର ମିଶ୍ର ଏହି ଘଟଣା ନିମ୍ନମତେ ବର୍ଣ୍ଣନା କରିଛନ୍ତି—
"ରାଜା ଜଗନ୍ନାଥ ସିଂହ ଅନପତ୍ୟ ହେବାରୁ ସେ ଦୁଃଖିତରେ
ସିକୁଅ ଗ୍ରାମରେ ଅତ୍ୟନ୍ତ ନିଷ୍ଠାରେ ବାଙ୍କନିଧି ଦେବଙ୍କ ଠାରେ ହେ
ଅଧିଆ ପଡ଼ିଲେ ଯାଇ ଜାଣି ତାଙ୍କ ଶତ ଜମା ସାଙ୍ଗେ ହୋଇ ।୩।
ମାଘ ଶୁକ୍ଳ ଚତୁର୍ଦ୍ଦଶୀ ଅର୍ଦ୍ଧନିଶି ହୁକୁମ କଲେ ସେ ଦେବ
ନିଅ ଏ ବିଭୂତି ଯତ୍ନେକରି ସ୍ଥିତ ଏଥୁ ପୁତ୍ର ଉପୁଜିବ ହେ
ଶୁଣି ଆସି ଯତ୍ନେ ରଖି ତୁମ୍ବାରେ ପୂଜନ୍ତି ନିତି ହେ ।୪।
କାର୍ତ୍ତିକ ଶୁକଳ ଚତୁର୍ଦ୍ଦଶୀ ବେଳ ଯୋଗ ଭୃଗୁସୁ ତହିଁର
ଦଶମାସ ପୂର୍ଣ୍ଣ ହେବାରୁ ଉତ୍ପନ୍ନ ତୁମ୍ବାରୁ ବେନି କୁମର ଯେ
ଯତ୍ନେ ଜନନୀ ତାତ ପାଳିଲେ ଏ ଅଯୋନି ସମ୍ଭୂତ ହୋଇଣ

ଶ୍ରୀ ଗୋପୀନାଥ ସିଂହଙ୍କ ଦ୍ୱାରା ଲିଖିତ—**Survey and Settlement Report of Ranpur Ex-State** ରେ ଏହି ଘଟଣା ନିମ୍ନମତେ ପ୍ରକାଶ ପାଇଛି—

**'Raja Jegannath Singh worshipped the deity Sri Bankanidhi Deb with deep devotion. One night the deity**

appeared before him and offered him some Bibhuti and said that he would get a son out of it. So the Raja kept it in a Tumba and worshipped it carefully. After ten months 2 twin sons were born out of it and they were Skand Singh and Mangal Singh. For their birth some water was brought from the river in a jar and when poured over them one Gagar fish fell on their head and so it is said that since the Gotra of the family is "Gargasyh". I think this view is not correct as Gotra is always connected with some Risis. The fore-fathers of the founder of this family was brought up in the Ashram of Gargab Risi and hence their Gotra is 'Gargasya'. On account of the wonderful birth of this Raja without mother, this family is known as "Ajonisambhuta".

ରାଜା ଜଗନ୍ନାଥ ସିଂହ ସୁଶାସକ ଥିଲେ । ସେ ଓଡ଼ିଶାର ମହାରାଜା ନରସିଂହ ଦେବଙ୍କ ଠାରୁ ବହରଣକୁ ଗୃହବାସ ଉପହାର ପାଇଥିଲେ ।

(୮୮) **ସ୍କନ୍ଦ ସିଂହ**- ରାଜା ସ୍କନ୍ଦ ସିଂହ ଖ୍ରୀ ୧୨୮୯ରୁ ଖ୍ରୀ ୧୩୪୦ ପର୍ଯ୍ୟନ୍ତ ମୋଟ ୫୧ବର୍ଷ ରାଜତ୍ୱ କରିଥିଲେ । ସେ ବଡ ଯୋଦ୍ଧା ଥିଲେ । ସେ ଅନେକ ହସ୍ତୀ ରଖିଥିବା ରଣପୁର ରାଜବଂଶାବଳୀରୁ ଜଣାପଡ଼େ । ରଣପୁର ଗଡ଼ ସନ୍ନିକଟରେ ବହୁ ଖମାର ଜମି ତାଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ତାଙ୍କ ପରେ ଯୁବରାଜ ମର୍ଦ୍ଦଳ ସିଂହ ରାଜା ହୋଇଥିଲେ ଓ ରାଜଜେମା ରତ୍ନମାଳା ଦେବୀ ବଡମ୍ବାର ପ୍ରଥମ ନରପତି ହଟ୍ଟକେଶୋର ରାଉତଙ୍କୁ ବିବାହ କରିଥିଲେ ।

(୮୯) **ମର୍ଦ୍ଦଳ ସିଂହ** – ରାଜା ମର୍ଦ୍ଦଳ ସିଂହ ଖ୍ରୀ ୧୩୪୦ରୁ ଖ୍ରୀ ୧୩୯୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

(୯୦) **କପର୍ଦ୍ଦି ସିଂହ**—କପର୍ଦ୍ଦି ସିଂହ ଖ୍ରୀ ୧୩୯୦ରୁ ଖ୍ରୀ ୧୪୪୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

(୯୧) **ଅର୍ଜୁନ ସିଂହ** - ରାଜା ଅର୍ଜୁନ ସିଂହ ବଡ ଯୋଦ୍ଧା ଥିଲେ । ସେ ଗଜପତି କପିଳେନ୍ଦ୍ର ଦେବଙ୍କ ସହ ଦାକ୍ଷିଣାତ୍ୟ ଅଭିଯାନରେ ଯାଇ ସେଠାରେ

ଦୀର୍ଘ ଦୁଇବର୍ଷ ଅବସ୍ଥାନ କରିଥିଲେ । ଗଜପତି ତାଙ୍କ ବୀରତ୍ୱ ଓ ସାହସିକତାରେ ମୁଗ୍ଧ ହୋଇ ବହୁ ପୁରସ୍କାର ପ୍ରଦାନ କରିଥିଲେ । ସେ ଖ୍ରୀ ୧୪୪୨ ରୁ ଖ୍ରୀ ୧୪୭୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

(୧୨) **ଅଭିମନ୍ୟୁ ସିଂହ** – ରାଜା ଅର୍ଜୁନ ସିଂହଙ୍କ ପୁତ୍ର ଅଭିମନ୍ୟୁ ସିଂହ ଖ୍ରୀ ୧୪୭୨ରୁ ୧୪୯୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଗଜପତି ପୁରୁଷୋତ୍ତମ ଦେବଙ୍କ ସହ କାଞ୍ଚି ଅଭିଯାନରେ ଯୋଗଦେଇ ସମ୍ମାନିତ ହୋଇଥିଲେ ।

ଏହି ଅଧ୍ୟାୟରେ ରଣପୁରର ପ୍ରଥମ ନରପତି ବଣ୍ୟବାସବଙ୍କ ଠାରୁ ଅଭିମନ୍ୟୁ ସିଂହଙ୍କ ପର୍ଯ୍ୟନ୍ତ ୧୨ ଜଣ ରାଜାଙ୍କ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା କରାଯାଇଛି । ଏହା ପରବର୍ତ୍ତୀ ରାଜାମାନଙ୍କ ସମ୍ପର୍କରେ ସ୍ୱତନ୍ତ୍ର ଅଧ୍ୟାୟ କରା-ଯାଇ ସବିଶେଷ ତଥ୍ୟାବଳୀ ପ୍ରଦାନ କରାଯାଇଅଛି ।



# ଦ୍ୱିତୀୟ ଅଧ୍ୟାୟ

## ଉଦ୍ଧବ ସିଂହ ନରେନ୍ଦ୍ର

### ଖ୍ରୀଷ୍ଟାବ୍ଦ ୧୪୯୪ ରୁ ୧୫୧୭

ଓଡ଼ିଶାରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ, ଶ୍ରୀ ଚୈତନ୍ୟ ଦେବଙ୍କ ପୁରୀ ଆଗମନ ଫଳରେ ବୈଷ୍ଣବ ଧର୍ମର ବହୁଳ ପ୍ରଚାର ଓ ପ୍ରସାର ଚାଲିଥାଏ । ସତେ ଯେପରି ରାଜାର ପ୍ରାସାଦ ଠାରୁ ପୁରପଲ୍ଲୀର ଦରିଦ୍ର କୁଟୀର ପର୍ଯ୍ୟନ୍ତ ଭକ୍ତି ରସର ମହିମା ପ୍ରତ୍ୟେକଙ୍କୁ ବିଭୋର କରିଛି । ଗଜପତି ପ୍ରତାପରୁଦ୍ର ଦେବ ନିଜେ ଶ୍ରୀ ଚୈତନ୍ୟ ଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ରାଜାଙ୍କ ପ୍ରଭାବରେ ସୈନ୍ୟ ସାମନ୍ତ ଓ ପ୍ରଜାମାନେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ରାଧାକୃଷ୍ଣ କୀର୍ତ୍ତନରେ ମାତି ଉଠିଥିଲେ ।

ତତ୍କାଳୀନ ରଣପୁର ରାଜ୍ୟର ରାଜା ଥିଲେ ଉଦ୍ଧବ ସିଂହ । ସେ ପ୍ରଭୁ ଜଗନ୍ନାଥଙ୍କର ଥିଲେ ପରମ ଭକ୍ତ । ସେ ପ୍ରତ୍ୟହ ପୁରୀ ଆସି ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ । ରାଜକାର୍ଯ୍ୟ ସିନା ବନ୍ଦ ହେଉଥିଲା କିନ୍ତୁ ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କେବେ ବନ୍ଦ ହେଉ ନଥିଲା ।

ରଣପୁର ଗଡ ଠାରୁ ପୁରୀ ପ୍ରାୟ ପଚାଶ କିଲୋମିଟର । ଏହି ରାସ୍ତାରେ ଯାତାୟତ ପାଇଁ ସଡକ କିମ୍ବା ଆଧୁନିକ ଧରଣର ଯାନବାହନ ସୁବିଧା ନଥିଲା । କେବଳ ଅଶ୍ୱ ଓ ହସ୍ତୀ ରାଜା ମହାରାଜା ମାନଙ୍କର ବାହନ ରୂପେ ବ୍ୟବହୃତ ହେଉଥିଲା । ନିକଟ ସ୍ଥାନକୁ ଯାତାୟତ ପାଇଁ ପାଲିଙ୍କିର ବ୍ୟବହାର ପ୍ରଚଳନ ଥିଲା ।

ରାଜା ଉଦ୍ଧବ ସିଂହ ପ୍ରତିଦିନ ସ୍ନାନ ସମାପ୍ତ ପରେ ଅଶ୍ୱ ପୃଷ୍ଠରେ ବସି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କରୁଥିଲେ । ରଣପୁରରୁ ଆସିଥିବା ଅଶ୍ୱଟି ପଥ ମଧ୍ୟରେ ଜଙ୍କିଆ ଗଡ ସାହିଠାରେ ବିଶ୍ରାମ ନେଉଥିଲା । ଜଙ୍କିଆ ଗଡସାହି ରଣପୁର ରାଜ୍ୟର ପୂର୍ବସୀମା ଥିଲା । ସେଠାରେ ଥିବା ଅଶ୍ୱଶାଳରୁ ଅନ୍ୟ ଏକ ଅଶ୍ୱ ଧରି ସେ ଶ୍ରୀକ୍ଷେତ୍ର ଯାତ୍ରା କରୁଥିଲେ । ଶ୍ରୀକ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ସମାପ୍ତ କରି ପୁରୀରେ ଥିବା ରଣପୁର କୋଠୀରୁ ଅନ୍ୟ ଏକ ଅଶ୍ୱରେ ଗଡ ସାହି ପର୍ଯ୍ୟନ୍ତ ଫେରୁଥିଲେ । ଗଡସାହି ଠାରେ ପୂର୍ବରୁ

ରହିଥିବା ଅଶ୍ବରେ ରଣପୁର ପ୍ରତ୍ୟାବର୍ତ୍ତନ କରୁଥିଲେ । ପ୍ରତିଦିନ ଏହିପରି ଅଶ୍ବଦ୍ୱାରା ଯାତାୟାତ ହେଉଥିଲା ।

କଥିତ ଅଛି ଏକଦିନେ ନଦୀ ବଢ଼ି ହେବାରୁ ସେ ପୁରୀ ଯାଇ ପାରିଲେନାହିଁ । ଫଳରେ ଉକ୍ତଦିନ ଜଗନ୍ନାଥଙ୍କ ଦର୍ଶନ ହୋଇ ପାରିଲାନାହିଁ । ଏଣୁ ରାଜା ଉଦ୍ଧବ ସିଂହ ଦୁଃଖରେ ଭାଙ୍ଗି ପଡ଼ିଲେ । ତା' ପରଦିନ ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । କିନ୍ତୁ ଅନ୍ନଜଳ ସ୍ପର୍ଶ ନକରି ସାତଦିନ ପର୍ଯ୍ୟନ୍ତ କଳ୍ପବଟ ମୂଳେ ଅଧିଆ ପଡ଼ିଲେ । ଭକ୍ତର ଭଗବାନ ଶ୍ରୀ ଜଗନ୍ନାଥ ଭକ୍ତର କାତର ନିବେଦନ ଶୁଣିଲେ । ରାଜା ଉଦ୍ଧବଙ୍କୁ ପ୍ରଭୁ ଜଗନ୍ନାଥଙ୍କର ଦୈବବାଣୀ ହେଲା ଜଗନ୍ନାଥଙ୍କର ଷୋଡ଼ଶ କଳାରୁ ଏକକଳା ରଣପୁର ଯିବ । ରାଜା ସେଠାରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ପୂଜା ଆରାଧନା କରିବେ । ଗଜପତି ପ୍ରତାପରୁଦ୍ର ଦେବଙ୍କୁ ମଧ୍ୟ ଏହି ସ୍ୱପ୍ନାଦେଶ ହେଲା । ଫଳରେ ଗଜପତି ପ୍ରତାପରୁଦ୍ର ଦେବ ରଣପୁର ରାଜା ଉଦ୍ଧବ ସିଂହଙ୍କୁ ଶ୍ରୀମନ୍ଦିର ମଧ୍ୟରୁ ଆଲିଙ୍ଗନ କରି ଶ୍ରୀନଅରକୁ ପାଛୋଟି ଆଣିଲେ ଓ ତାଙ୍କ ଶିରରେ ଶାଢ଼ୀବାନ୍ଧି ନରେନ୍ଦ୍ର ଉପାଧି ପ୍ରଦାନ କଲେ । ସେ ଗୁଣ୍ଡିଚା ଘରେ ଥିବା ମାଧବ ମୂର୍ତ୍ତିଙ୍କୁ ରଣପୁର ରାଜାଙ୍କୁ ପ୍ରଦାନ କଲେ । ଏହି ମାଧବମୂର୍ତ୍ତି ରଣପୁରର ପରବର୍ତ୍ତୀ ରାଜା ଶାରଙ୍ଗଧର ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ସ୍ଥାନାନ୍ତରିତ ହୋଇ ଏବେ ଚମ୍ପାଗଡ଼ରେ ପୂଜା ପାଉଛନ୍ତି । ଶୁଣାଯାଏ ଏହି ମାଧବ ମୂର୍ତ୍ତିଙ୍କୁ ଇନ୍ଦ୍ରଦ୍ୟୁମ୍ନ ମହାରାଜା ସପ୍ତଦାରୁରେ ପ୍ରତିଷ୍ଠା କରି ଗୁଣ୍ଡିଚା ଘରେ ସ୍ଥାପନ କରିଥିଲେ ।

ରାଜା ଉଦ୍ଧବ ନରେନ୍ଦ୍ର ରଣପୁର ଗଡ଼ରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ତୋଳାଇଥିଲେ । ଜଗନ୍ନାଥଙ୍କର ଷୋହଳ କଳାରୁ ଏକ କଳା ରଣପୁର ଆସିଥିବାରୁ ପୁରୀ ଶ୍ରୀ ମନ୍ଦିରର ସମସ୍ତ ପୂଜାବିଧି ସହ ସାମଞ୍ଜସ୍ୟ ରଖି ଏଠାରେ ପୂଜା ବିଧିମାନ କରାଗଲା । ସେହିଦିନଠାରୁ ଶ୍ରୀ ଜଗନ୍ନାଥଙ୍କ ପାଇଁ ଅନୁଷ୍ଠିତ ହେଉଥିବା ବର୍ଷକ ବାରଯାତ୍ରା ଏଠାରେ ପାଳିତ ହୋଇ ଆସୁଅଛି ।

**ମହାଲକ୍ଷ୍ମୀ ମୂର୍ତ୍ତି ପ୍ରତିଷ୍ଠା** — ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ପରେ ମହାଲକ୍ଷ୍ମୀଙ୍କ ମନ୍ଦିର ପ୍ରତିଷ୍ଠା ଆବଶ୍ୟକ ହେଲା । ଏଣୁ ରାଜା ଉଦ୍ଧବ ନରେନ୍ଦ୍ର ଶ୍ରୀକ୍ଷେତ୍ର ଯାଇ ମହାଲକ୍ଷ୍ମୀଙ୍କ ପାଖରେ ଅଧିଆ ପଡ଼ିଲେ । କିମ୍ବଦନ୍ତୀ ଅଛି ଯେ ଜଗତ ଜନନୀ ମହାଲକ୍ଷ୍ମୀ ରାଜାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ରଣପୁର ଆଗମନ କରିବେ ବୋଲି ଆଦେଶ ଦେଲେ । ଏହାପରେ ରଣପୁର ଜଗନ୍ନାଥ ମନ୍ଦିରରେ ମହାଲକ୍ଷ୍ମୀଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା ।

ଦେବୀ ମହାଲକ୍ଷ୍ମୀ ରାଜା ଉଦ୍ଧବଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ବର ଦେଇଥିଲେ ଯେ ପ୍ରତିବର୍ଷ ମାଘ ପୂର୍ଣ୍ଣିମୀ ରାତକୁ ଏକ କ୍ଷୁଦ୍ର ସୁବର୍ଣ୍ଣ ଶକଟରେ ସାତଗୋଟି ସ୍ୱର୍ଣ୍ଣ ନିର୍ମିତ କାକରା ପିଠା ରାଜାଙ୍କ ନଅରକୁ ଆସିବ । ରାଜ ପରିବାର ପ୍ରତିବର୍ଷ ମାଘ ପୂର୍ଣ୍ଣିମୀ ଦିନ ଅତି ନିଷ୍ଠାର ସହ ଧନଦାତ୍ରୀ ଦେବୀ ମହାଲକ୍ଷ୍ମୀଙ୍କ ଆରାଧନା କରି ସୁବର୍ଣ୍ଣ କାକରା ପାଉଥାନ୍ତି । ଫଳରେ ରାଜ ଭଣ୍ଡାର ଧନଧାନ୍ୟରେ ପରିପୂର୍ଣ୍ଣ ଥିଲା । ଏହି ବିଧି ଉଦ୍ଧବ ନରେନ୍ଦ୍ରଙ୍କ ପରେ ରାଜା ଚନ୍ଦ୍ରଶେଖର ନରେନ୍ଦ୍ର, ମୁକୁନ୍ଦ ନରେନ୍ଦ୍ର ଓ ରାମଚନ୍ଦ୍ର ନରେନ୍ଦ୍ରଙ୍କ ପର୍ଯ୍ୟନ୍ତ ନିଷ୍ଠାର ସହ ପାଳିତ ହୋଇଥିଲା ଓ ପ୍ରତିବର୍ଷ ସାତଗୋଟି ସ୍ୱର୍ଣ୍ଣ କାକରା ରାଜ ନଅରକୁ ମାଘପୂର୍ଣ୍ଣିମୀ ରାତରେ ଆସୁଥିଲା । ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ସମୟରେ ଦେବୀଙ୍କ ପୂଜାବିଧିରେ ନିଷ୍ଠାର ଅଭାବ ହେବାରୁ ସୁବର୍ଣ୍ଣ କାକରା ପ୍ରାପ୍ତ ବନ୍ଦ ହୋଇଥିଲା ବୋଲି ରଣପୁର ରାଜବଂଶ ଇତିହାସରୁ ଜଣାପଡେ ।

ରାଜା ଉଦ୍ଧବ ନରେନ୍ଦ୍ର ମଣିନାଗ ପର୍ବତର ଶିଖର ଦେଶରେ ମଣିନାଗ ଦୁର୍ଗା ମନ୍ଦିର ନିର୍ମାଣ କରାଇଥିଲେ । ପୂର୍ବରୁ ସେଠାରେ ଏକ ମଣ୍ଡପ ଥିଲା । ଏହି ମଣ୍ଡପ ମଧ୍ୟରେ ଚକାଶିଳା ଉପରେ ଦୁର୍ଗଦେବୀ ପୂଜା ପାଉଥିଲେ । ଏହାର ବହୁ ପୂର୍ବରୁ ଚକାଶିଳା ଉପରେ ମଣିନାଗ ଭଟ୍ଟାରକ (ଶିବ) ଓ ଦୁର୍ଗା ଦେବୀ ପୂଜା ପାଉଥିଲେ । ମଣିନାଗ ପର୍ବତ ଉପରେ ପ୍ରଚଳିତ ଥିବା ଶିବ ପୂଜା ପାଇଁ କେଉଁ କାରଣରୁ ଓ କେବେଠାରୁ ବନ୍ଦହେଲା ତାହା ଜଣା ପଡନାହିଁ ।

କବି ବଳରାମ ସ୍ୱାଇଁ 'ମଣିନାଗ' କାବ୍ୟରେ ଉଦ୍ଧବ ନରେନ୍ଦ୍ରଙ୍କ ସମ୍ପର୍କରେ ନିମ୍ନମତେ ପ୍ରକାଶ କରିଛନ୍ତି —

"ରଣପୁର ରାଜବଂଶ କୀର୍ତ୍ତିରାଜ
ଏ ସାରା ଉତ୍କଳେ ରହିଛି ବିରାଜ ॥
ଜ୍ୟେଷ୍ଠ ବିଶ୍ୱାବସୁ ଶ୍ରୀ ନୀଳମାଧବ –
ସେବୁଥିଲେ ଥିଲେ ବିଶ୍ୱବାସବ ॥
ଏହି ରଣାସୁର ପୁର ଅଧୀଶ୍ୱର
ତାଙ୍କଠୁ ସମ୍ଭବ ଏ ରାଜବଂଶର ॥
ଶ୍ରୀ ନୀଳମାଧବ ଶ୍ରୀକ୍ଷେତ୍ରେ ଗମିଲେ
ତଥାପି ଏ ବଂଶ ତାଙ୍କୁ ନଭୁଲିଲେ ॥

ବଂଶ ପରମ୍ପରାକ୍ରମେ ରାଜାମାନେ
ଦର୍ଶନେ ଗମନ୍ତି ସୁବିଧି ବିଧାନେ ।।
ଥିଲେ ଅଶ୍ୱାରୋହୀ ଉଦ୍ଧବ ନୃପତି
ନିତି ଜଗନ୍ନାଥ ଦର୍ଶନେ ଭୁଞ୍ଜନ୍ତି ।।
ବନ୍ୟା ଯୋଗୁଁ ବନ୍ଦ ହେଲା ଅଶ୍ୱଗତି
ଏଠାରେ ମନ୍ଦିର ତୋଳିଲେ ଭୂପତି ।।
କଲେ ଅନଶନ ବଟବୃକ୍ଷ ତଳେ
ପ୍ରଭୁ ଜଗନ୍ନାଥ କହିଲେ ସ୍ୱପ୍ନରେ ।।
"ମାଧବ ମୂରତି ନିଅ ହେ ନରେଶ
ଗଜପତିଙ୍କୁ ବି ହେଲା ସ୍ୱପ୍ନାଦେଶ ।।
"ଏକ କଳା ମୋର ଯିବ ରଣପୁର"
ହସି କହିଥିଲେ କାଳିଆ ଠାକୁର ।।
ଗଜପତି ଅନୁମତିରେ ମାଧବ—
ମୂର୍ତ୍ତି ଆଣିଥିଲେ ରାଜା ଶ୍ରୀ ଉଦ୍ଧବ ।।
ଗଜପତି ଠାରୁ ନରେନ୍ଦ୍ର ପଦକୁ
ଲଭି, କରଛନ୍ତି ଉଜ୍ଜଳ କୁଳକୁ ।।"

**ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା**—S. S. O. R. E ୨୫ ପୃଷ୍ଠାରେ ଏ ସମ୍ପର୍କରେ ନିମ୍ନମତେ ଉଲ୍ଲେଖ ଅଛି— " Udhab Singh built the temple of Lord Jagannath' at Ranpur and his wife built the Mukhsiali. He then built the temple of Maninag Durga on the top of the hill. He started 12 Jatras of Jagannath in Ranpur for his Durshan."

ରାଜା ଉଦ୍ଧବ ସିଂହ ନରେନ୍ଦ୍ରଙ୍କ ଦ୍ୱାରା ନିର୍ମିତ ରଣପୁର ଜଗନ୍ନାଥ ମନ୍ଦିର ମଧ୍ୟଯୁଗୀୟ କଳା ସ୍ଥାପତ୍ୟର ପରିଚୟ ଦିଏ । ଏହି ମନ୍ଦିର ପ୍ରଭାବରେ ଅନ୍ୟାନ୍ୟ ଗଡ଼ଜାତ ମାନଙ୍କରେ ମନ୍ଦିର ନିର୍ମିତ ହୋଇଥିବା ପ୍ରମାଣ ମିଳେ । O. H. R J. Vol III ର Part I ପୃଷ୍ଠା ୨୪ରେ ଉଲ୍ଲେଖ ଅଛି ଯେ, "Jagannath temples of Keonjhargarh, Ranpur and Paralakhemundi influenced their environs fixing a new type of architecture which was later on followed

in other temples and temple groups, as for example, at Khandapada garh and Kantilo."

ଉକ୍ତ ରାଜା ଉଦ୍ଧବ ସିଂହ ନରେନ୍ଦ୍ରଙ୍କ କୀର୍ତ୍ତି ରଣପୁରର ଜଗନ୍ନାଥ ମନ୍ଦିର ତାଙ୍କୁ ଯୁଗ ଯୁଗ ଧରି ଅମର କରି ରଖିବ । ମଧ୍ୟଯୁଗୀୟ ଏହି ମନ୍ଦିରର କଳାସ୍ଥାପତ୍ୟ ପୂର୍ବ ଗୌରବର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ।

## ଚନ୍ଦ୍ରଶେଖର ସିଂହ ନରେନ୍ଦ୍ର
### ଖ୍ରୀ ୧୫୧୭ ରୁ ୧୫୨୯

ରାଜା ଚନ୍ଦ୍ରଶେଖର ବଡ଼ ଧାର୍ମିକ ଥିଲେ । ସେ ଜଣେ ଶିକ୍ଷାପ୍ରେମୀ ରାଜା ଭାବେ ସୁବିଦିତ । ତାଙ୍କ ସମୟରେ ରଣପୁର ଗଡ଼ ସଂସ୍କୃତ ଶିକ୍ଷାର ପ୍ରଧାନ କେନ୍ଦ୍ର ଥିଲା । ପୁରୀ, ଗଞ୍ଜାମ ଓ କଟକ ଜିଲ୍ଲାର ବହୁ ସଂସ୍କୃତ ଛାତ୍ରମାନେ ଏଠାରେ ଅଧ୍ୟୟନ କରୁଥିଲେ । ମଠ ମାନଙ୍କରେ ସେମାନଂକର ମାଗଣାରେ ରହିବା ଓ ଖାଇବାର ବନ୍ଦୋବସ୍ତ ହୋଇଥିଲା ।

**ସ୍ୱପ୍ନେଶ୍ୱର ମନ୍ଦିର** – ରଣପୁର ଗଡ଼ ସାମ୍ନାକୁ ସାହି ପୂର୍ବ ପାର୍ଶ୍ୱରେ ଥିବା ସ୍ୱପ୍ନେଶ୍ୱର ମନ୍ଦିର ତାଙ୍କର ପ୍ରଧାନ କୀର୍ତ୍ତି ଅଟେ । ଏହି ମନ୍ଦିରର ଶୋଭା ଅତି ଅନୁପମ । କବି ବଳରାମ ସ୍ୱାଇଁ 'ମଣିନାଗ' କାବ୍ୟରେ ଏହା ନିମ୍ନମତେ ବର୍ଣ୍ଣନା କରିଛନ୍ତି –

"ଦିଶେ ପ୍ରାଚୀଦିଗେ କୈଳାସ ଧବଳ
ସୁନ୍ଦର ମନ୍ଦିର ସ୍ୱପ୍ନେଶ୍ୱରଙ୍କର ।।
ସବୁ ଶିରି ସୁଧା ଗୋଳିକ ବିଧାତା
ବୋଳିଦେଲେ ତହିଁ, ଧନ୍ୟ ସେ ନିର୍ମାତା ।।"

ସ୍ୱପ୍ନେଶ୍ୱର ମହାଦେବ ରଣପୁର ଗଡ଼ର ପ୍ରତ୍ୟକ୍ଷ ଦେବତା । ନିୟମ ପ୍ରମାଣ ନିମିତ୍ତ ଲୋକମାନେ ଏଠାକୁ ଆସିଛନ୍ତି । ଶ୍ରୀ ସ୍ୱପ୍ନେଶ୍ୱର ଦେବଙ୍କ ମନ୍ଦିର ନିର୍ମାଣ ସମ୍ପର୍କରେ ଏକ କିମ୍ବଦନ୍ତୀ ଅଛି । ପ୍ରତିଦିନ ଏକ ଗୋଗୋଷ୍ଠୁ ନିଜେ:ରୁ ବାହାରିଆସି ଏଠାରେ ଥିବା ଶିବଲିଙ୍ଗ ଉପରେ ଦୁଗ୍ଧସ୍ରାବ କରୁଥିଲା । ଏହା ଗାଈ ଜଗୁଆଳ ଓ ଅନ୍ୟମାନେ ଜାଣିପାରି ଶିବଲିଙ୍ଗ ଥିବାର ଦେଖି ପାରିଲେ । ରାଜାଙ୍କ କର୍ଣ୍ଣକୁ ଏ ସମ୍ବାଦ ଯିବା ପୂର୍ବରୁ ସେ ସ୍ୱପ୍ନାଦେଶ ପ୍ରାପ୍ତ

ହୋଇଥିବାରୁ ଠାକୁରଙ୍କ ନାମ 'ସ୍ୱପ୍ନେଶ୍ୱର ଦେବ' ରଖିଲେ । ଠାକୁରଙ୍କ ନିମିତ୍ତ ଏକ ସୁରମ୍ୟ ମନ୍ଦିର ତୋଳି ସେବାପୂଜା ସକାଶେ ଯଥେଷ୍ଟ ଭୂମିବାଡ଼ି ଖଞ୍ଜି ଥିଲେ । ଏହା ବ୍ୟତୀତ ଠାକୁରଙ୍କ ପାଇଁ ଏକ ପୁଷ୍କରଣୀ ଖୋଳାଇଥିଲେ । ଏହା 'ସର' ପୁଷ୍କରଣୀ ନାମରେ ପରିଚିତ । 'ସର' ଖୁବ୍ ଗଭୀର ଓ ଚତୁଃ-ପାର୍ଶ୍ୱରେ ପ୍ରସ୍ତର ପାବଚ୍ଛମାନ ତଳକୁ ଚାଲି ଲମ୍ବି ଛି ।

**୯୫ – ମୁକୁନ୍ଦସିଂହ ନରେନ୍ଦ୍ର** – ରାଜା ଚନ୍ଦ୍ରଶେଖରଙ୍କ ପୁତ୍ର ମୁକୁନ୍ଦ ସିଂହ ନରେନ୍ଦ୍ର ଖ୍ରୀ ୧୫୨୯ରୁ ୧୫୩୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କର ସ୍ୱଳ୍ପ କାଳ ରାଜୁତି ମଧ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ ।

# ରାମଚନ୍ଦ୍ର ସିଂହ ନରେନ୍ଦ୍ର

## ଖ୍ରୀ ୧୫୩୮ରୁ ଖ୍ରୀ ୧୫୪୫

ରାଜା ରାମଚନ୍ଦ୍ର ବଡ଼ ବଦାନ୍ୟ ଥିଲେ । ପିତାମହ ଚନ୍ଦ୍ରଶେଖରଙ୍କ ଭଳି ତାଙ୍କର ସଂସ୍କୃତ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରାଗ ଥିଲା । ଫଳରେ ରଣପୁର ରାଜ୍ୟକୁ ବହୁ ସଂସ୍କୃତ ପଣ୍ଡିତ ଓ କବିମାନଙ୍କର ଆଗମନ ହେଉଥିଲା । ରଣପୁର ଗଡ଼ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ପ୍ରଧାନ କେନ୍ଦ୍ରରୂପେ ପରିଚିତ ଲାଭ କରିଥିଲା । ରଣପୁର ଗଡ଼ଭଳି ଗଡ଼ ମଧୁପୁର ଓ ପାରଳା-ଖେମୁଣ୍ଡି ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ପ୍ରଧାନ କେନ୍ଦ୍ରରୂପେ ସ୍ୱୀକୃତ ହୋଇଥିଲା ।

ତତ୍କାଳୀନ ପ୍ରଜାମାନେ ଜ୍ୟୋତିର୍ବିଦ୍ୟା ଓ ଜ୍ୟୋତିଷ ଶାସ୍ତ୍ରରେ ପାରଙ୍ଗମ ଥିଲେ । ସକଳ ଦିଗରୁ ପ୍ରଜାମାନେ ସୁଖ ଶାନ୍ତିରେ ଥିଲେ । S.S.O.R.E. ର ୨୫ ପୃଷ୍ଠାରେ ରାମଚନ୍ଦ୍ର ସିଂହ ନରେନ୍ଦ୍ରଙ୍କ ସମ୍ପର୍କରେ ନିମ୍ନ ମତେ ଉଲ୍ଲେଖ ରହିଛି – "In his time the state was much improved through his intelligence and exertions. He was an able Ruler in many respects. During his reign the people were versed in astronomy, astrology and music. He established a village by his name known as Ramachandrapur. He was honoured by Govind Deb, Maharaja of Bhoi dynasty and was offered Mohan Mali, (ମୋହନ ମାଳି), Nagara (ନାଗରା), Kothala Ghoda (କୋଥଲ ଘୋଡ଼ା) by the Raja Gobinda Deb.

He built the temple of Budhalinga of Gopalpur. He also built the famous temple of Sri Kamaleswar Deb in Sinduria and the people of this ex-state is more devoted to this deity than any other and no body dares to take special Oath by touching the Prasad of this deity."

କଥିତ ଅଛି ରାଜା ରାମଚନ୍ଦ୍ରଙ୍କ ସମୟରେ ଲୋକମାନେ ଖୁବ୍ ସୁଖ ଶାନ୍ତିରେ ଥିଲେ । ଏପରିକି ରାଜ୍ୟର ମରୁଡ଼ି ଅକାଳ ହେଉନଥିଲା । ଠିକ୍ ସମୟରେ ବର୍ଷା ହେଉନଥିଲେ ରାମଚନ୍ଦ୍ରପୁର ଶାସନର ମନ୍ତ୍ର ତନ୍ତ୍ର ସିଦ୍ଧ ବ୍ରାହ୍ମଣ ଶ୍ରୀ ଜଗନ୍ନାଥ ରଥଙ୍କ ଦ୍ୱାରା ଗଡ଼ର ଦକ୍ଷିଣ ପାର୍ଶ୍ୱରେ ଥିବା ସାଗର ପୁଷ୍କରିଣୀରେ ସୂର୍ଯ୍ୟଙ୍କୁ ଗୃହ୍ନିଁ ଇନ୍ଦ୍ର ଦେବଙ୍କ ପୂଜା କରାଯାଉଥିଲା । ଫଳରେ ସମଗ୍ର ରାଜ୍ୟରେ ବର୍ଷା ହେଉଥିଲା । ଏହି ବ୍ରାହ୍ମଣଙ୍କ ବଂଶଧରମାନେ ଏଥିପାଇଁ ରାଜ ପ୍ରଦତ୍ତ 'ମେଘମାଳିଆ' ଜମି ଭୋଗକରି ଆସୁଅଛନ୍ତି ।

ରାଜା ରାମଚନ୍ଦ୍ର ନରେନ୍ଦ୍ର ସୁଶାସକ ଥିଲେ । ତାଙ୍କ ଶାସନକୁ ରାମରାଜ୍ୟ ଶାସନ କୁହାଯାଉଥିଲା । ସେ ବେଦଜ୍ଞ ତଥା ମନ୍ତ୍ରସିଦ୍ଧ ବ୍ରାହ୍ମଣମାନଙ୍କୁ ଯଥେଷ୍ଟ ପୁରସ୍କାର ଦେବା ସଙ୍ଗେ ସଙ୍ଗେ ସମ୍ମାନିତ କରୁଥିଲେ । ସେ ନିଜ ନାମରେ ରାମଚନ୍ଦ୍ରପୁର ଶାସନ ସ୍ଥାପନ କରି ସେଠାରେ ବ୍ରାହ୍ମଣମାନଙ୍କୁ ରଖାଇଥିଲେ ।

ସେ ଗୋପାଳପୁର ବୁଢ଼ାଲିଙ୍ଗ ମନ୍ଦିର ନିର୍ମାଣ କରିଥିଲେ ଏବଂ ଦେବତାଙ୍କ ସେବାପୂଜା ପାଇଁ ଯଥେଷ୍ଟ ଜମିବାଡ଼ି ଖଞ୍ଜିଥିଲେ । ଏହା ପୂର୍ବରୁ ଗୋପାଳପୁରସ୍ଥ ନୀଳକଣ୍ଠେଶ୍ୱର ଦେବଙ୍କ ମନ୍ଦିର କେଶରୀ ବଂଶର ରାଜା କୁଞ୍ଜ କେଶରୀ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ଦେବତାଙ୍କର ସେବା ପୂଜା ପାଇଁ ଛତିଶା ନିଯୋଗ ବ୍ୟବସ୍ଥା ଥିଲା ଏବଂ ସେବାୟତମାନଙ୍କ ପାଇଁ ୧୨୦ ବାଟି ଜମି ଖଞ୍ଜା ହୋଇଥିଲା । ଶ୍ରୀ ନୀଳକଣ୍ଠେଶ୍ୱର ଦେବଙ୍କ ମନ୍ଦିର ମହାରାଜା କୁଞ୍ଜ କେଶରୀ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ ରଣପୁର ଗଡ଼ରେ ରଣପୁର ରାଜାଙ୍କ ଦ୍ୱାରା ଅନୁଷ୍ଠିତ ପଞ୍ଚୁଦୋଳ ଯାହାରେ ଏହି ଠାକୁର ଯୋଗ ଦିଅନ୍ତି ନାହିଁ । ଗୋପାଳପୁରରେ ଓଡ଼ିଶା ମହାରାଜା କୁଞ୍ଜ କେଶରୀ ଦେବଙ୍କ ନାମରେ ଏକ ସାହି ମଧ୍ୟ ନାମିତ ହୋଇଛି । ଏହାକୁ କୁଞ୍ଜପୁର ସାହି କୁହାଯାଉଛି ।

କେଶରୀ ବଂଶର ରାଜତ୍ୱକାଳ ଖ୍ରୀ ୫୨୦ରୁ ୧୦୪୪ ମଧ୍ୟରେ ହୋଇଥିବାରୁ ଶ୍ରୀ ମାଳକଣ୍ଠେଶ୍ୱର ଦେବଙ୍କ ମନ୍ଦିର ଏକ ପ୍ରାଚୀନ ମନ୍ଦିର ରୂପେ ପରିଗଣିତ ହୁଏ ।

**କମଳେଶ୍ୱର ମନ୍ଦିର—** ରାଜା ବୀରମହେନ୍ଦ୍ର ନରେନ୍ଦ୍ର ସିଂ କମଳେଶ୍ୱର ଦେବଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ଏହା ମଣିଆଖଣ୍ଡ ନିକଟ ହିନ୍ଦୁଡ଼ିଆ ଠାରେ ଅବସ୍ଥିତ । ବାବା କମଳେଶ୍ୱର ରଣପୁର ରାଜ୍ୟର ପ୍ରତ୍ୟକ୍ଷ ଠାକୁର । ଏହି ସ୍ଥାନର ଦୃଶ୍ୟ ଅତି ମନୋରମ । ଘଞ୍ଚ ସବୁଜ ବନାନୀ ପରିବେଷ୍ଟିତ ଏହି ଦେବପୀଠରେ ନୈସର୍ଗିକ ଶୋଭା ପ୍ରତ୍ୟେକ ଦର୍ଶକ ପ୍ରାଣକୁ ବିମୋହିତ କରିଥାଏ । ଏହାର ଦକ୍ଷିଣ ଦିଗରେ କିଛିଦୂର ବ୍ୟବଧାନରେ ଧାନ ଓ ଗୌଣିଆ ପର୍ବତ ଏବଂ ଉତ୍ତର ଦିଗରେ ମଣିନାଗ ପର୍ବତ ବିଦ୍ୟମାନ ।

କିମ୍ବଦନ୍ତୀରୁ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ବାବା କମଳେଶ୍ୱର ଦେବଙ୍କ ମହିମା ପ୍ରକଟିତ ହୋଇଥିଲା । କମଳ ନାମକ ଏକ ଗୋପାଳ ବାଳକ ପ୍ରତିଦିନ ଜଙ୍ଗଲ ମଧ୍ୟକୁ ଗୋରୁପଲ ଚରାଇବାକୁ ନେଇଥାଏ । ସେ ବିଷ୍ଣୁଭକ୍ତ ହୋଇଥିବାରୁ ତା'ର ମଥାରେ ତିଳକ ଓ କଣ୍ଠରେ ତୁଳସୀ ମାଳ ଶୋଭା ପାଉଥିଲା । ସେ ପ୍ରତିଦିନ ସଙ୍ଗରେ ନେଇଥିବା ବଂଶୀ-ବାଦନ ପୂର୍ବକ ସଙ୍ଗୀତର ଅପୂର୍ବ ଝଙ୍କାରରେ ବନଭୂମି ପ୍ରକମ୍ପିତ କରୁଥିଲା । ତା'ର କଣ୍ଠଦେଶରୁ ଜୟଦେବଙ୍କ ବିରଚିତ ଗୀତଗୋବିନ୍ଦ ନିସୃତ ହେଉଥାଏ । ସେ ବିଷ୍ଣୁଭକ୍ତ ହୋଇଥିବାରୁ ଶିବଙ୍କ ମନ୍ଦିର ପାଖକୁ କୌଣସି ସମୟରେ ନଯାଇ ଦୂରରୁ ବେଳେ ବେଳେ ଜୁହାର କରିଥାଏ ।

ଏକଦା ସେ ବଂଶୀବାଦନ କରି ଚାଲି ଚାଲି ମନ୍ଦିର ନିକଟରେ ଉପନୀତ ହେଲା ଓ ତା'ର ବଂଶୀବାଦନର ଅପୂର୍ବ ସ୍ୱରରେ ଦେବାଳୟ ତଥା ଏହାର ସମୀପବର୍ତ୍ତୀ ଅଞ୍ଚଳ ମୁଖରିତ ହେଲା । ଫଳତଃ ତାଣ୍ଡବ ନୃତ୍ୟର କଳାକାର ମହାଶମ୍ଭୁ ମନ୍ଦିର ଭିତରୁ ଥାଇ କମଳକୁ ଆହ୍ୱାନ କଲେ ଏବଂ ବଂଶୀବାଦନ କରିବାକୁ ନିର୍ଦ୍ଦେଶ ଦେଲେ । କେହି ପାଖରେ ନଥିବାର ଦେଖି ସେ ପୁନର୍ବାର ବଂଶୀବାଦନରେ ପୂର୍ବଭଳି ନିୟୋଜିତ କରିଥିଲା । ଏହାପରେ ଦେବ ଦେବ ମହାଦେବ କହିଲେ, " ରେ କମଳ, ଶୁଣିପାରୁ ନାହୁଁ କି ? ମୁଁ ମନ୍ଦିର ଭିତରେ ଥାଇ ତୋତେ ଆହ୍ୱାନ କରୁଛି । ତୁ ମନ୍ଦିରର ପୂର୍ବଦିଗ ଦ୍ୱାରପାଖକୁ ଚାଲି ଆସ । ତୋର ବଂଶୀର ମଧୁର ସ୍ୱନ ଶୁଣିବାକୁ ମୋର ପ୍ରବଳ ଇଚ୍ଛା ହେଉଛି ।" ମନ୍ଦିରର ପଶ୍ଚିମ ପାର୍ଶ୍ୱରେ ରହି କମଳ ଉତ୍ତର ଦେଲା,

"ହେ ଠାକୁର ! ତୁମର ଯଦି ମୋ ବଂଶୀର ସ୍ୱର ଶୁଣିବାକୁ ଏତେ ଆଗ୍ରହ, ତେବେ ତୁମ ଦ୍ୱାରର ମୁଖ ମୋ ସମ୍ମୁଖକୁ କର ।" ଏହାପରେ ମୁହୂର୍ତ୍ତକ ମଧ୍ୟରେ ମନ୍ଦିରର ପୂର୍ବଦ୍ୱାରର ସମସ୍ତ ଶୋଭା ପରିବର୍ତ୍ତିତ ହୋଇ ପଶ୍ଚିମ ଦିଗକୁ ହୋଇଗଲା ଏବଂ ସଦାଶିବ ନିଜେ ଭକ୍ତ କମଳକୁ ସାକ୍ଷାତ ଦେଇ ତା'ର ବଂଶୀର ମଧୁର ସ୍ୱନ ତଥା ଗୀତ ଗୋବିନ୍ଦ ଶୁଣିବାକୁ ଲାଗିଲେ । ସେ କହିଲେ, "ତୁ ଯେଉଁ ବିଷ୍ଣୁଙ୍କୁ ମନରେ ଧ୍ୟାନ କରୁଛୁ ସେ ବିଷ୍ଣୁ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସେ ଏବଂ ମୁଁ ଏକ ଓ ଅଭିନ୍ନ ।"

ମରଦ୍ୱନ ମନ୍ଦିରର ପୂର୍ବଶୋଭା ପଶ୍ଚିମ ଦିଗକୁ ପରିବର୍ତ୍ତିତ ହୋଇ ଥିବାର ଅଲୌକିକ ଘଟଣା ଜନମାନସରେ ପ୍ରଚାରିତ ହୋଇଗଲା । ଫଳରେ ରଣପୁରର ଗୁଣଗ୍ରାହୀ ରାଜା ରାମଚନ୍ଦ୍ର ନରେନ୍ଦ୍ର ତ୍ରିବେଣେଶ୍ୱର ଠାକୁରଙ୍କ ନାମ ଭକ୍ତ କମଳ ନାମରେ "କମଳେଶ୍ୱର" ରଖିଲେ ଏବଂ ବଂଶୀବାଦନ କରୁଥିବା ଅବସ୍ଥାରେ ଗୋପାଳ ବାଳକ କମଳର ଏକ ପ୍ରତିମୂର୍ତ୍ତି ଠାକୁରଙ୍କ ପାଖରେ ସ୍ଥାପନ କଲେ ।

ପୂର୍ବରୁ ଗ୍ରାମବାସୀଙ୍କ ଦ୍ୱାରା ନିର୍ମିତ ମନ୍ଦିରର ପରିବର୍ତ୍ତନ କରି ସେ ଏକ ସୁନ୍ଦର ସୁଉଚ୍ଚ ମନ୍ଦିର ନିର୍ମାଣ କଲେ । ଏଠାରେ ଛତିଶା ନିଯୋଗ ବ୍ୟବସ୍ଥା କରି ତିନି ପ୍ରହର ପୂଜାର ବନ୍ଦୋବସ୍ତ କଲେ । ସେହି ଦିନଠାରୁ ବାବା କମଳେଶ୍ୱରଙ୍କ ନାମ ଓଡ଼ିଶା ବିଖ୍ୟାତ ହେଲା । ସନ୍ଥ ଅଚ୍ୟୁତାନନ୍ଦ ଦାସ କମଳେଶ୍ୱର ପୀଠରେ ଦୀର୍ଘ ୭ବର୍ଷ ରହି ହରିବଂଶ ପୁରାଣ ରଚନା କରିଥିଲେ । ସେହିଭଳି ଶିଶୁ ବନମାଳୀ ଦାସ ବାବା କମଳେଶ୍ୱରଙ୍କ ଠାରୁ ବରପ୍ରାପ୍ତ ହୋଇ ଶ୍ରୀକୃଷ୍ଣଙ୍କ ରାସଲୀଳା ସମ୍ବନ୍ଧୀୟ ବୃହତ୍ତମ କାବ୍ୟ ଗ୍ରନ୍ଥ ରଚନା କରିଥିଲେ । ବାବା ଶ୍ରୀ କମଳେଶ୍ୱରଙ୍କ ଠାରେ ପ୍ରତ୍ୟେହ ଗୀତ ଗୋବିନ୍ଦ ପାଠ କରାଯାଏ । ହରି ଓ ହର ଏକ ଏହାର ଜ୍ୱଳନ୍ତ ପ୍ରମାଣ ଦେଇଛନ୍ତି ମହାପ୍ରଭୁ ଶ୍ରୀ କମଳେଶ୍ୱର ।

ଶ୍ରୀ କମଳେଶ୍ୱର ମନ୍ଦିର ରାଜା ରାମଚନ୍ଦ୍ର ନରେନ୍ଦ୍ରଙ୍କର ପ୍ରଧାନ କୀର୍ତ୍ତି ଅଟେ । ଏହା ବ୍ୟତୀତ ତାଙ୍କ ରାଜତ୍ୱର ଅନ୍ୟ ଏକ ବିଶିଷ୍ଟ ଘଟଣା ହେଉଛି ରାଜଆସ ପରିବର୍ତ୍ତନ । ପୂର୍ବରୁ ରାଜାଙ୍କର ରାଜଆସ ମଣିନାଗ ପର୍ବତ ତଳେ ଅବସ୍ଥିତ ଥିଲା । ପ୍ରବଳ ବୈଦ୍ୟୁତାପ ଯୋଗୁଁ ସେଠାରେ ବସବାସ କରିବା କଷ୍ଟକର ହେଉଥିଲା । ଏଣୁ ପୂର୍ବ ରାଜଆସର ତଳକୁ ନୂତନ ଭାବେ ରାଜଆସ ନିର୍ମାଣକରି ସେଠାରେ ବସବାସ କଲେ ।

# ପଦ୍ମନାଭ ସିଂହ ନରେନ୍ଦ୍ର

## ଖ୍ରୀ ୧୫୫୮ରୁ ୧୫୮୪

ରାଜା ରାମଚନ୍ଦ୍ର ନରେନ୍ଦ୍ରଙ୍କ ପରେ ତାଙ୍କ ପୁତ୍ର ପଦ୍ମନାଭ ନରେନ୍ଦ୍ର ମଧ୍ୟ ରଣପୁର ରାଜବଂଶର ଏକ ଉଜ୍ଜ୍ୱଳ ନକ୍ଷତ୍ର । ତାଙ୍କ ଶୌର୍ଯ୍ୟ ବୀର୍ଯ୍ୟର ପଟାନ୍ତର ନାହିଁ । ମହାରାଜା ଗୋବିନ୍ଦ ଦେବଙ୍କ ସହ ରାମଚନ୍ଦ୍ର ନରେନ୍ଦ୍ରଙ୍କର ସୁସମ୍ପର୍କ ଥିଲା । ସେ ହେଉଛନ୍ତି ଭୋଇ ବଂଶର ପ୍ରଥମ ରାଜା । ପ୍ରତାପରୁଦ୍ର ଦେବଙ୍କ ପରେ ତାଙ୍କର ଦୁଇ ପୁତ୍ର କାଲୁଆ ଦେବ ଓ କଖାରୁଆ ଦେବଙ୍କ ଅଯୋଗ୍ୟତା ହେତୁ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ନିଜକୁ ଗୋବିନ୍ଦ ଦେବ ନାମ ଧାରଣ କରି ମହାରାଜା ହୋଇଥିଲେ । ସେ ଘଟଣାକ୍ରମେ ନିହତ ହେବାରୁ ଚକ୍ର ପ୍ରତାପ ରାଜା ହେଲେ । ସେ ମଧ୍ୟ ନିଜ ପୁତ୍ର ନରସିଂହ ଜେନାଙ୍କ ଦ୍ୱାରା ନିହତ ହେଲେ । ଫଳରେ ଗୋବିନ୍ଦ ଦେବଙ୍କ ସମୟରେ କଟକ ସୁବାର ଶାସକ ଥିବା ମୁକୁନ୍ଦ ହରିଚନ୍ଦନ ଓଡ଼ିଶା ରାଜ୍ୟର ଶାସକ ହେଲେ । ସେ ମହାରାଜା ମୁକୁନ୍ଦ ଦେବ ରୂପେ ପରିଚିତ ହେଲେ ।

ମହାରାଜା ମୁକୁନ୍ଦ ଦେବଙ୍କ ରାଜତ୍ୱରେ ପଦ୍ମନାଭ ନରେନ୍ଦ୍ର ଥିଲେ ରଣପୁରର ରାଜା । ପଦ୍ମନାଭ ନରେନ୍ଦ୍ରଙ୍କ ଶୌର୍ଯ୍ୟ ବୀର୍ଯ୍ୟରେ ମୁଗ୍ଧ ହୋଇ ମହାରାଜା ମୁକୁନ୍ଦ ଦେବ ତାଙ୍କ ସହିତ ନିଜ କନ୍ୟା "କୁମାରୀ ଦେବୀ"ର ବିବାହ କରାଇଥିଲେ । ଏହା ଫଳରେ ଓଡ଼ିଶା ମହାରାଜାଙ୍କ ଦରବାରରେ ପାତ୍ର ମନ୍ତ୍ରୀ, ରାଜନ୍ୟ ବର୍ଗଙ୍କ ମଧ୍ୟରେ ରଣପୁର ରାଜାଙ୍କ ଆସନ ଥିଲା ପ୍ରଥମ । ସେ ଗଜପତି ମହାରାଜାଙ୍କ ଜାମାତା ହୋଇଥିବାରୁ ସେ ଏବଂ ତାଙ୍କ ପରିବାରର ସ୍ତ୍ରୀ ଲୋକମାନେ ଛତ୍ର, ହାସ, ମଶାଲ ସହ ପାଲିଙ୍କିରେ ବସି ଗଜପତିଙ୍କ ଶ୍ରୀନଅର ଓ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଭିତର କଲ୍ପବଟ ପର୍ଯ୍ୟନ୍ତ ଯିବାର ଅଧିକାର ପାଇଥିଲେ । ସାମନ୍ତ ରାଜା ମାନଙ୍କର ଶ୍ରୀମନ୍ଦିର କଳ୍ପବଟ ମୂଳ ପର୍ଯ୍ୟନ୍ତ ପାଲିଙ୍କିରେ ବସି ଯିବାର ଅଧିକାର ନଥିଲା । ଏପରିକି କେଉଁ କେଉଁ ସାମନ୍ତ ରାଜାମାନେ ଗଜପତିଙ୍କ ଶ୍ରୀନଅର ଠାରୁ କେତେ କେତେ ଦୂର ବ୍ୟବଧାନରେ ପାଲିଙ୍କି କିମ୍ବା ହସ୍ତୀପୃଷ୍ଠରୁ ଅବତରଣ କରି ଗଜପତିଙ୍କୁ ସାକ୍ଷାତ୍ କରିବେ ତା'ର ମଧ୍ୟ ବିଧି ବିଧାନ ଥିଲା । ଏ କ୍ଷେତ୍ରରେ ରଣପୁର ରାଜା ପଦ୍ମନାଭ ନରେନ୍ଦ୍ର ଗଜପତିଙ୍କ ଜାମାତା ହୋଇଥିବାରୁ ସର୍ବୋଚ୍ଚ ଅଧିକାର

ପାଇଥିଲେ । ସେ ଗଜପତିଙ୍କ ଭଳି ଖିଡକି ପାଗ ପଗଡ଼ି ବାନ୍ଧିବାର ଅଧିକାର ପାଇଥିଲେ ।

ଗଜପତି ମୁକୁନ୍ଦ ଦେବଙ୍କ ଜାମାତା ହୋଇଥିବାରୁ ସେ ପୂର୍ବର ମାର୍କଣ୍ଡେଶ୍ୱର ସାହି ଏବଂ ପ୍ରଭୂତ ଅର୍ଥ ଓ ମୂଲ୍ୟବାନ ପଦାର୍ଥମାନ ଯୌତୁକ ଆକାରରେ ପାଇଥିଲେ । ରାଜଜେମା କୁମାରୀ ଦେବୀ ଯୌତୁକ କଉଡ଼ିକୁ ଗଜପତିଙ୍କର ମନ୍ତ୍ରୀ ଶୌଚ ମହାପାତ୍ରଙ୍କୁ ଅଧିକରୁ ଅଧିକ ବୃଦ୍ଧି ନିମନ୍ତେ ପ୍ରଦାନ କରିଥିଲେ । ଉକ୍ତ କଉଡ଼ି ବିନିଯୋଗ ଦ୍ୱାରା ଯଥେଷ୍ଟ ବୃଦ୍ଧି ପାଇବା ପରେ ଏହା ରଣପୁର ରାଜା ଓ ରାଣୀଙ୍କୁ ଫେରାଇ ଦେବାକୁ ଚାହିଁଥିଲେ । କିନ୍ତୁ ସେମାନେ ଏହା ଗ୍ରହଣ ନକରି ଗଜପତି ମୁକୁନ୍ଦ ଦେବଙ୍କ ଅନୁମତିରେ ପୁରୀରେ ଏକ ପୁଷ୍କରିଣୀ ମନ୍ତ୍ରୀ ଶୌଚ ମହାପାତ୍ରଙ୍କ ଦ୍ୱାରା ଖୋଳାଇଥିଲେ । ଏହି ଯୌତୁକ କଉଡ଼ି ପୁଷ୍କରିଣୀ ଖନନ ପାଇଁ ଯଥେଷ୍ଟ ନହେବାରୁ ରାଜା ପଦ୍ମନାଭ ନରେନ୍ଦ୍ର ନିଜ ରାଜକୋଷରୁ ଆବଶ୍ୟକୀୟ ଅର୍ଥ ପ୍ରଦାନ କରିଥିଲେ । ରଣପୁରର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଅର୍ଥରେ ଓ ମନ୍ତ୍ରୀ ଶୌଚ ମହାପାତ୍ରଙ୍କ ଦ୍ୱାରା ଏହି ପୁଷ୍କରିଣୀ ଖନନ ହୋଇଥିବାରୁ ଏହାର ନାମ 'ନରେନ୍ଦ୍ର ଶୌଚ' ହୋଇଛି ବୋଲି କଥିତ ଅଛି ।

ପୁରୀର ଏହି ପ୍ରସିଦ୍ଧ ନରେନ୍ଦ୍ର ପୁଷ୍କରିଣୀର ନିର୍ମାତା ରାଜା ପଦ୍ମନାଭ ନରେନ୍ଦ୍ରଙ୍କର ଅଠରଜଣ ପୁତ୍ର ଥିଲେ । ସେମାନେ ଗଜପତି ମୁକୁନ୍ଦ ଦେବଙ୍କ ଠାରୁ ଅଠରଟି ଉପାଧି ଓ ଅଠରଟି ଶାସ ପାଇଥିଲେ । ଏହି ଅଠରଟି ଉପାଧି ହେଲା ଶ୍ରୀଚନ୍ଦନ, ଶ୍ରେଷ୍ଠରାୟ, ରାୟସିଂହ, ଭ୍ରମରବର, କ୍ଷତ୍ରିବର, ବୀରବର, ମଙ୍ଗରାଜ, ହରିଚନ୍ଦନ, ଜଗଦେବ, ବିଦ୍ୟାଧର, ଜଗତସିଂହ, ରାଜେନ୍ଦ୍ରସିଂହ, ମର୍ଦ୍ଦରାଜସିଂହ, ସୁରେନ୍ଦ୍ର ସିଂହ, ଚମ୍ପତିସିଂହ, ମାନସିଂହ, ଗଜେନ୍ଦ୍ର ସିଂହ ଓ ପୃଥୁ ସିଂହ ।

ଗଜପତି ମୁକୁନ୍ଦ ଦେବଙ୍କ ସମୟରେ କଳାପାହାଡ ଓଡ଼ିଶା ଆକ୍ରମଣ କରିଥିଲା । ଏଥିରେ ଘଟିଥିବା ଯୁଦ୍ଧରେ ଯୁବରାଜ ପାର୍ଥ ଶ୍ରୀଚନ୍ଦନଙ୍କ ବ୍ୟତୀତ ଅନ୍ୟ ସତରଜଣ ଭାଇ ନିହତ ହୋଇଥିଲେ । ପରେ ଯୁବରାଜ ପାର୍ଥ ଶ୍ରୀଚନ୍ଦନ ରଣପୁର ଗଡ଼ରେ ଚଣ୍ଡେଶ୍ୱର ମହାଦେବଙ୍କ ମନ୍ଦିର ପଶ୍ଚିମାମୁଖୀ କରି ତୋଳିବାରୁ ଦେବ ଅଭିଶାପରେ ନିହତ ହେଲେ ବୋଲି କୁହାଯାଏ ।

ସାଧାରଣତଃ ଦେବାଦେବୀଙ୍କ ମନ୍ଦିର ପୂର୍ବମୁଖୀ ହୋଇ ତୋଳା ହୋଇଥାଏ । କିନ୍ତୁ ଏଥିରେ ବ୍ୟତିକ୍ରମ ଘଟିବାରୁ ସେ ନିହତ ହେଲେ ବୋଲି ଜନଶ୍ରୁତି ରହିଛି ।

ରାଜା ପଦ୍ମନାଭଙ୍କ ସମସ୍ତ ପୁତ୍ର ନିହତ ହେବାରୁ ସେ ଦୁଃଖରେ ଭାଙ୍ଗି ପଡିଲେ । ସେଣୁ ସେମାନଙ୍କ ସ୍ମୃତିରକ୍ଷା ପାଇଁ ପୂର୍ବ ମନ୍ଦିର ଉତ୍ତର ଦିଗରେ ଥିବା ନଈରେ ଅଠରନଳା ବନ୍ଧ ନିର୍ମାଣ କରାଇଥିଲେ । ଅଠର ଜଣ ପୁତ୍ରଙ୍କ ସ୍ମୃତିର ସ୍ମାରକୀ ରୂପେ ଏହି ବନ୍ଧ ପୋଲର ଅଠରଟି ନଳା ଅଦ୍ୟାବଧି ବିଦ୍ୟମାନ । ପୂର୍ବରୁ ମତ୍ସ୍ୟ କେଶରୀଙ୍କ ଦ୍ୱାରା ଏଠାରେ ଏକ ବନ୍ଧ କରା-ଯାଇଥିଲ୍ । ତାହା ନଷ୍ଟହୋଇ ଯାଇଥିବାରୁ ଅଠରଜଣ ପୁତ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ସେହି ସ୍ଥାନରେ ଅଠରନଳା ବନ୍ଧ ନିର୍ମାଣ କରାଇଥିଲେ । ଏହି ନଳାର ଲମ୍ବ ୨୦ ଫୁଟ ଏବଂ ଖିଲାଣ ଗୁଡିକର ଓସାର ୧୬ରୁ ୧୨ଫୁଟ ପର୍ଯ୍ୟନ୍ତ । ମଧ୍ୟ ଖିଲାଣଟି ସବୁଠାରୁ ବଡ ଏବଂ ଦୁଇ ପାଖକୁ କ୍ରମାନ୍ୱୟରେ ଛୋଟ କରାଯାଇଛି । ଯେଉଁ ନଦୀ ଉପରେ ଅଠର ନଳା ଗଢ଼ା ହୋଇଛି ତାହାର ନାମ ମଧୁପୁର ନଦୀ । ସାଧାରଣତଃ ତାହା "ହୁଲୁହୁଲିଆ" ବା ମଙ୍ଗଳା ନଦୀ ନାମରେ ପରିଚିତ । ପ୍ରାଚୀନ ଖିଲାଣ କାମ ଯେ ସହସ୍ରାଧିକ କାଳ ଅକ୍ଷୁର୍ଣ୍ଣ ରହିପାରେ ଏହା ତା'ର ନିଦର୍ଶନ ଅଟେ ।

ମାଦଳା ପାଞ୍ଜିରେ ନରେନ୍ଦ୍ର ପୁଷ୍କରିଣୀ ଖନନ ଓ ଅଠରନଳା ବନ୍ଧ ନିର୍ମାଣ ସମ୍ପର୍କରେ ନିମ୍ନମତେ ବର୍ଣ୍ଣିତ ହୋଇଛି— "ପଦ୍ମନାଭ ନରେନ୍ଦ୍ର ଏ ରାଜାଙ୍କ ପାଟ । ଏ ନରେନ୍ଦ୍ର ଶୌଚ ଖୋଳାଇଥିଲେ । ଏ ରାଜା ବାଙ୍କୀ ସୁହାଣ ଫୋଡାଇଲେ । ଛଅ ରଥ ହେଉଥିଲ ନନ୍ଦିଘୋଷ ତିନି ରଥ କରାଇଲେ । ଗୁଣ୍ଡିଚା ଘର ଦେଉଳ କାଠ ମଣ୍ଡପ ହୋଇଥିଲ ତାହା ପଥର ମଣ୍ଡପ କଲେ । ଗୁଣ୍ଡିଚାଘେ ବେଢ଼ା କଲେ । ଏଥିରେ କୂପ ଖୋଳାଇଲେ ।"

ମାଦଳା ପାଞ୍ଜିର ଉପରୋକ୍ତ ଲେଖାରୁ ପ୍ରମାଣ ମିଳେ ଯେ ପୂର୍ବରୁ ବଳଗଣ୍ଡି ଓ ଗୁଣ୍ଡିଚା ଘର ମଧ୍ୟରେ ଏକ ନଦୀ ଥିଲ । ଫଳରେ ରଥଯାତ୍ରାରେ ଉଭୟ ପାର୍ଶ୍ୱରେ ତିନି ତିନି ରଥ ରହି ଠାକୁର ଡଙ୍ଗାରେ ନଦୀ ପାର ହୋଇ ଗୁଣ୍ଡିଚା ଘରକୁ ଯାଉଥିଲେ ।

ରାଜା ପଦ୍ମନାଭ ନରେନ୍ଦ୍ର, 'ନରେନ୍ଦ୍ର ପୁଷ୍କରିଣୀ' ଖନନ ପରେ ସେଠାରେ ଚନ୍ଦନ ଯାତ୍ରା ଆରମ୍ଭ କରିଥିଲେ । ଏହି ସରୋବରରେ

ଅକ୍ଷୟ ତୃତୀୟା ଠାରୁ ଶ୍ରୀ ଜଗନ୍ନାଥଙ୍କ ଚନ୍ଦନ ଯାତ୍ରା ଉତ୍ସବ ପାଳିତ ହୋଇ ଥାଏ । ସେ ପୁରୀ ଶ୍ରୀ ଜଗନ୍ନାଥଙ୍କ ଅମୃତ ମନୋହିକୁ 'ନରେନ୍ଦ୍ର ଗେଡ଼େଡ଼େ" ଗୃହଥାଳ ଖଞ୍ଜାଇଥିଲେ ।

ପୁରୀ ଜିଲ୍ଲା ଗେଜେଟିଅର ୧୦୫ ପୃଷ୍ଠାରେ ନରେନ୍ଦ୍ର ପୁଷ୍କରିଣୀ ଖନନ ସମ୍ପର୍କରେ ନିମ୍ନମତେ ବର୍ଣ୍ଣିତ ହୋଇଛି । "Raja Padmanav Narendra, one of the rulers of Ranpur caused the ex-cavated of the famous Narendra tank at puri"

ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ସମୟରେ ରଣପୁରର ଯଶ ଖ୍ୟାତି ସମଗ୍ର ଓଡ଼ିଶାରେ ବ୍ୟାପି ଯାଇଥିଲା । ରାଜାଙ୍କ ଧନ ସମ୍ପତ୍ତି ଅମାପ ଥିଲା । ଏହାଙ୍କ ସମୟରେ ରାଜ୍ୟର ବାର୍ଷିକ ଆୟ ଥିଲା ନବେଲକ୍ଷ ବତିଶ ସହସ୍ର କାହାଣ କଉଡ଼ି । ସେ ଭେଣ୍ଟବର ମାଳର ଜଗତି ମଣ୍ଡା ଠାରେ ଏକ ଜଉଘର ନିର୍ମାଣ କରି ସେଠାରେ ପ୍ରଚୁର ଧନ ସମ୍ପତ୍ତି ସୁରକ୍ଷିତ କରିଥିଲେ ।

ପଦ୍ମନାଭ ନରେନ୍ଦ୍ର ରଣପୁର ଗଡ଼ରେ ଏକ ମଠ ସ୍ଥାପନ କରିଥିଲେ । ଏହା ବାଲଙ୍କା ମଠ ନାମରେ ପରିଚିତ । ସେ ଏହି ମଠ ନିମନ୍ତେ ଯଥେଷ୍ଟ ଭୂସମ୍ପତ୍ତି ଖଞ୍ଜିଥିଲେ । ଏହାଙ୍କ ରାଣୀ କୁମାରୀ ପାଟ ମହାଦେବୀ ଜଗମୋହନଙ୍କ ଭୋଗ ମଣ୍ଡପ ନିର୍ମାଣ କରିଥିଲେ ।

କଥିତ ଅଛି ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ନିମନ୍ତ୍ରଣ କ୍ରମେ ସନ୍ଥ ଅଚ୍ୟୁତାନନ୍ଦ ଦାସ ରଣପୁର ଆସିଥିଲେ । ସନ୍ଥ ଅଚ୍ୟୁତାନନ୍ଦ ଘଟଣାକ୍ରମେ ସନ୍ଥ ଯଶୋବନ୍ତଙ୍କ ଶାଳକ ଅଡ଼ଙ୍ଗର ରାଜା ରଘୁରାମ ଚମ୍ପତିରାୟଙ୍କ କନ୍ୟା ମୋହିନୀଙ୍କର ପାଣିଗ୍ରହଣ କରିଥିଲେ । ସନ୍ଥ ଅଚ୍ୟୁତାନନ୍ଦ ଜାତିରେ ଅଗୋ-କରଣ ଥିଲେ । ଅଡ଼ଙ୍ଗର ରାଜା କ୍ଷତ୍ରିୟ ଥିଲେ । କ୍ଷତ୍ରିୟ କନ୍ୟା କରଣ ପାଇକୁ ବିବାହ କରିବା ବିଧି ନିଷେଧ ଥିଲା । ଏହି ଶଙ୍କାର ସମାଧାନ କରି ଚମ୍ପାବତୀ କହିଲେ,

"ନୃପ କୁମାରେ ମୋର ବାର୍ତ୍ତା ନାହିଁ, ରାଜ ବିନୋଦକୁ ତୁଚ୍ଛ ମଣେ ।
ମୁହିଁ ଗୋପିକା ସେ ଅଟେ ଗୋପାଳ, ସେ କୃଷ୍ଣସଖା ମୁଁ ରାଧାଙ୍କ ମେଳ ।
କଳି ଜନ୍ମ ତାଙ୍କ ଅଗୋକୁଳରେ ମୋର ଜନମଟି ସୋମ ଅଂଶରେ ।
କ୍ଷତ୍ରିୟ କରଣ ବାରଣ ନାହିଁ, ସଖୀ ପଙ୍କତିରେ ଭେଦ ନଥାଇ ।"

ମୋବାରକଙ୍କ ଗାଦିଗ୍ରହଣ କରିବା ପରେ ପଦଚ୍ୟୁତ ନବାବ ଆଉଙ୍କୁ ଗଡ଼କଲ୍ । ରାଜା ରଘୁରାମ ଛୋଟରାୟ ଏ ନବାବଙ୍କୁ ଆନ୍ତରିକ ଭାବରେ ସମ୍ମାନ ପ୍ରଦର୍ଶନ କଲେ ନାହିଁ । ଅଚ୍ୟୁତଙ୍କ ଉପରେ ପ୍ରତିଶୋଧ ନେବାକୁ ଉପାୟ ପାଞ୍ଚିଲେ । ପରିସ୍ଥିତିର ତାଡ଼ନାରେ ପଡ଼ି ଅଚ୍ୟୁତାନନ୍ଦ ସସ୍ତ୍ରୀକ ରଣପୁର ରାଜ୍ୟକୁ ପଳାୟନ କଲେ । ରଣପୁରର ପ୍ରଖ୍ୟାତ ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୃଷ୍ଠପୋଷକତାରେ ନଳିଆଗେଣ୍ଡ୍ରା ଗ୍ରାମରେ ସେ ସସ୍ତ୍ରୀକ ବସବାସ କରିବାକୁ ଲାଗିଲେ ।

ରଣପୁର ରାଜ୍ୟରେ ବାସ କରୁଥିବାବେଳେ ଅଚ୍ୟୁତ ତାଙ୍କର ସୁପ୍ରସିଦ୍ଧ "ହରିବଂଶ" ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ । କଥିତ ଅଛି, ଅପୁତ୍ରିକ ପଦ୍ମନାଭ ନରେନ୍ଦ୍ର ପ୍ରତିଦିନ ହରିବଂଶ ଶୁଣିବା ପରେ ୫୦ଗୋଟି ପୁତ୍ର ସନ୍ତାନ ଲାଭ କରିଥିଲେ । ତେଣୁ ପୁତ୍ର ସନ୍ତାନ ନିମନ୍ତେ ସରଳ ଧର୍ମପ୍ରାଣ ଓଡ଼ିଆ ଗୃହସ୍ଥମାନେ ହରିବଂଶ ପାରାୟଣର ଆୟୋଜନ କରିଥାନ୍ତି ।

ସନ୍ଥ ଅଚ୍ୟୁତାନନ୍ଦ ଶ୍ରୀକୃଷ୍ଣଙ୍କ ଅପାର କରୁଣା ବଳରୁ କବିତ୍ୱ ପ୍ରାପ୍ତ ହୋଇଥିଲେ ଏବଂ ଜୀବନକାଳ ମଧ୍ୟରେ ଅସଂଖ୍ୟ ଗ୍ରନ୍ଥ ରଚନା କରିବାରେ ସମର୍ଥ ହୋଇଥିଲେ । ଅସଂଖ୍ୟ ଗ୍ରନ୍ଥମାନଙ୍କ ମଧ୍ୟରୁ "ହରିବଂଶ" ପୁରାଣ ଜନପ୍ରିୟ ଗ୍ରନ୍ଥ ଅଟେ । ସାତ ଖଣ୍ଡରେ ବିଭକ୍ତ ହୋଇଥିବାରୁ ଏହାକୁ "ସାତଖଣ୍ଡିଆ ହରିବଂଶ" କୁହାଯାଏ ।

ପ୍ରତିବର୍ଷ ହରିଜନ୍ମ ବା ଜନ୍ମାଷ୍ଟମୀ ଦିନ ଓଡ଼ିଶାର ସ୍ଥାନେ ସ୍ଥାନେ ଅଚ୍ୟୁତାନନ୍ଦଙ୍କ ହରିବଂଶ ପାଠ କରାଯାଏ ଏବଂ ଉପବାସୀ ଭକ୍ତମଣ୍ଡଳୀ ଏହା ଭକ୍ତି ସହକାରେ ଶ୍ରବଣ କରିଥାନ୍ତି । ଏ ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ରାଧାକୃଷ୍ଣ ଲୀଳା ପ୍ରଖ୍ୟାପକ ସର୍ବପ୍ରଥମ ଓ ସର୍ବ ବୃହତ୍ ଗ୍ରନ୍ଥ ହୋଇଥିବାରୁ ଓଡ଼ିଆ ସାହିତ୍ୟରେ ବିଶିଷ୍ଟ ସ୍ଥାନର ଅଧିକାରୀ ହୋଇପାରିଛି ।

ସନ୍ଥ ଅଚ୍ୟୁତାନନ୍ଦଙ୍କ "ଗୋପାଳଙ୍କ ଓଗାଳ," "ଲଉଡ଼ି ଖେଳ," "ଅନନ୍ତ ଗୋଇ" ଇତ୍ୟାଦି ଗ୍ରନ୍ଥରେ ରଣପୁର ରାଜା ପଦ୍ମନାଭ ନରେନ୍ଦ୍ର ଓ ଗଜପତି ମୁକୁନ୍ଦ ଦେବଙ୍କ ନାମ ଉଲ୍ଲେଖ ଅଛି । ସେ ରଣପୁର ରାଜ୍ୟରେ ଦୀର୍ଘ ସାତବର୍ଷ ଅତିବାହିତ କରିଥିଲେ । ଏହା ବ୍ୟତୀତ ପୁରୀ, ନେମାଳ, କୋଣାର୍କ, ଭୁବନେଶ୍ୱର, ଝଙ୍କଡ଼, ସୋନପୁର, କଟକ, କେନ୍ଦ୍ରାପଡ଼ା, ଆଳି, ପାଜନଗର, କୁଣ୍ଡବଳଦା, ସାଇଲୋ, ବଡ଼ମୂଳ ଓ ଜଗତପୁର ଆଦି ସ୍ଥାନ ମାନଙ୍କରେ ଅବସ୍ଥାନ କରିଥିବା ଜଣାଯାଏ ।

ରଣପୁର ରାଜ୍ୟରେ କବି ଶିଶୁ ବନମାଳୀ ଦାସଙ୍କର ଅଭ୍ୟୁଦୟ ଘଟିଥିଲା । ରାଜା ପଦ୍ମନାଭ ନରେନ୍ଦ୍ରଙ୍କ କନିଷ୍ଠଭ୍ରାତା ପୁରୁଷୋତ୍ତମ ମଙ୍ଗରାଜଙ୍କ ପୃଷ୍ଠପୋଷକତାରେ କବି ବନମାଳୀ ଦାସ ଏକ ବୃହତ ରାସଗ୍ରନ୍ଥ ରଚନା କରିଥିଲେ । ଓଡ଼ିଶାରେ ଯେତେ ସବୁ ରାସଗ୍ରନ୍ଥ ପ୍ରକାଶ ପାଇଛି ତନ୍ମଧ୍ୟରେ ଏହା ବୃହତ୍ତମ ଅଟେ । କିନ୍ତୁ ଏହା ଅଦ୍ୟାପି ପାଣ୍ଡୁଲିପି ଆକାରରେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇରହିଛି ।

ରାସ ପ୍ରଣେତା ଶିଶୁ ବନମାଳୀ ଦାସଙ୍କ "ବନମାଳୀ ରାସ" ଶୀର୍ଷକ ଖଣ୍ଡିଏ ପୋଥି ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର କଳାହାଣ୍ଡିର ପ୍ରତ୍ନତତ୍ତ୍ୱ ଚାଠାଗାର ପାଇଁ ସଂଗ୍ରହ କରି ରଖିଥିଲେ । କିନ୍ତୁ ପୋଥିଟି ଅସମ୍ପୂର୍ଣ୍ଣ । ପରବର୍ତ୍ତୀ ସମୟରେ ବୌଦ ରାଜ ପରିବାରରୁ "ବନମାଳୀ ରାସ" ଶୀର୍ଷକ ଖଣ୍ଡିଏ ସମ୍ପୂର୍ଣ୍ଣ ପୋଥି ସଂଗୃହୀତ ହୋଇ ରାଜ୍ୟ ସଂଗ୍ରହାଳୟ ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ଉକ୍ତ ପୋଥିର ପାଠରୁ ଜଣାଯାଏ ଯେ, କବି ବନମାଳୀ ରଣପୁର ରାଜ୍ୟର ମହିଆଖଣ୍ଡ ଗ୍ରାମରେ 'ଗୋପାଳ କୂଳ'ରେ ଜନ୍ମ ଗ୍ରହଣ କରିଥିଲେ । ତାଂକ ପିତାଙ୍କ ନାମଥିଲା ମୋହନ ଜେନା ସେ ପିଲାଟି ଦିନରୁ ସାଧୁ ସଙ୍ଗ କରି, ସେହି କୃପାରୁ ଶ୍ରୀକୃଷ୍ଣ ରାସଲୀଳା ରଚନା କରିଥିଲେ । ସେ ଲେଖିଛନ୍ତି:-

"ବଳିଲି ରାହାସ ଯେ ଗୋଚର ରସଲୀଳା ।
ମୂର ଅଇଚ ନବାର ଦେବକୀ ଦେବା ବଳା ॥

× × × ×

"ଅଖିଳ ମଙ୍ଗଳ ତ୍ରୈଲୋକ୍ୟ ନାରାୟଣ ॥
ବନମାଳୀ ଦାସ ମୁଁ ଶରଣ ଜନ୍ମେ ଜନ୍ମ ॥
ବାଳୁତ-ମତ୍ତ ଦୁର୍ବୁଦ୍ଧି ଅଜ୍ଞ ଜଡଦେହୀ ।
ବର୍ଣ୍ଣେଣ ଗୋପାଳ ମୁଁ ସୁଜନ ସଙ୍ଗନାହିଁ ॥
ପିତା ମୋହନ ଜେନା ପରେଣ ଉପକାର ।
ତାଙ୍କ ଧର୍ମରୁ ସେ ନିର୍ମଳ ମୋ ଶରୀର ॥"

(ବନମାଳୀ ରାସ ରାଜ୍ୟ ସଂଗ୍ରହାଳୟ ପୋଥିପ୍ରବ-୪୮୯)

କବି ବନମାଳୀ ଦାସ 'ରାସ'ର ଶେଷ ଅଧ୍ୟାୟରେ ନିଜ ସମ୍ବନ୍ଧରେ ବହୁ ତଥ୍ୟ ଯୋଗାଇଛନ୍ତି । ସେଥିରୁ ଜଣାଯାଏ ଯେ ରଣପୁର ରାଜ୍ୟର ମହିଆଖଣ୍ଡ ଗ୍ରାମରେ ତାଙ୍କର ଘରଥିଲା ।

"ମୁହିଁ ସେ ଅନାସ୍ଥ ମୋର ସ୍ଥିତି ନାହିଁ ।
ଥକାଦର ଖଣ୍ଡିଏ ବଣିଜାର ଭୂଇଁ ॥
ଚଣ୍ଡପୁର ରାଜ୍ୟରେ ବଡ ଦେଦଶେ ଘର ।
ନଢ଼ିଖଣ୍ଡ ଗ୍ରାମରେ ରହଣି ମୋହର ॥
ପଦ୍ମନାଭ ନରେନ୍ଦ୍ର ଭୂମିରେ ଅଧିପତି ।
ମହତ୍ତ୍ୱ ମର୍ଯ୍ୟାଦା ବିବେକ ଜନପ୍ରୀତି ॥
ସାନୁଜ ମଙ୍ଗରାଜ ପୁରୁଷୋତ୍ତମ ନାମ ।
ସନ୍ଥଜନେ ପ୍ରୀତି ଯେ ବିବେକ ଉତ୍ତମ ॥
ଅତି ଭାଗ୍ୟବନ୍ତ ଦୁଃଖିଜନେ ଦୟା ।
ମୋହଠାରେ ଅନୁଗ୍ରହ ବହୁତ ସୁଦୟା ॥
ମେଲ୍ଣି ମାଗିଲେ ସେ ନବଅନ୍ତ ମୋତେ ଯାଇ ।
ମୁହିଁ ଆଶ୍ରେ କଲ ମାଇଲା ମୁଖ ଚୁଇ ॥
ରହିଲ ଭୂଜତଳେ ନାହିଁ ଅଇର ଭୟେ
ମୋତେ ଦୁଇଭାଇ ହରି ଅର୍ଜୁନ ପ୍ରାୟେ ॥"
(ବନମାଳୀ ରସ ରାଜ୍ୟ ସଂଗ୍ରହାଳୟ ପୋଥିପତ୍ର—୪୧୦)

କବି ବନମାଳୀ ଦାସ"ବନମାଳୀ ରସ" ଶୀର୍ଷକ ଏହି ବିରାଟ ରସ ଗ୍ରନ୍ଥରେ ମୂଳରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ଛନ୍ଦରେ ପୁସ୍ତକଟି ଶେଷ କରିଛନ୍ତି । ଏତେ ବଡ ପୁସ୍ତକଟିରେ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନାରେ ଶେଷ କରିଥିଲେ ହେଁ, ପ୍ରଥମେ ନୀଳଗିରି ନାଥ ଶ୍ରୀ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି, ଯଥା—

"ବନ୍ଦଇ ନୀଳଗିରି ସୁନ୍ଦର ଜଗନ୍ନାଥ,
ଯାହାର ଲୀଳା ଅଂଶୁ ଥାପନା ଏ ଜଗତ ।
ଅଶେଷ ସୁଖଧାମ ଚରମ ସୁଖ ଭୋଳେ,
ଦାରୁବ୍ରହ୍ମ ସ୍ୱରୂପେ ବିଜୟ ଆଦିମୂଳେ ॥"
(ବନମାଳୀ ରସ, ପ୍ରଥମ ଛାନ୍ଦ)

ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୁତ୍ର ଯୁବରାଜ ପାର୍ଥ ଶ୍ରୀଚନ୍ଦନଙ୍କର ମଧ୍ୟ କବିମାନଙ୍କ ପ୍ରତି ଆଦର ଥିଲା । ଯୁବରାଜଙ୍କ ପୃଷ୍ଠପୋଷକତାରେ ପଣ୍ଡିତ ବିଷ୍ଣୁ ଦାସ ସ୍ଥାନ ପାଇଥିଲେ । ସେ ନିରବଚ୍ଛିନ୍ନ ଭାବରେ ବାଣୀ ସାଧନାରେ

ନରଚ ରହ୍ନ ବନ୍ଧ ଚଉତଶା ଓ କାବ୍ୟ ରଚନା ଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପୂର୍ଣ୍ଣ କରିଥିବା "କଳାବତୀ କାବ୍ୟପାଠ"ରୁ ଜଣାଯାଏ, ଯଥା —

"ବସ୍ତ୍ରଦାସ ନାମରେ ଏକ କବି
ସେହୁ ଗୀତେ ପୂରେଇଲ୍ ପୃଥିବୀ ।"

ତାଙ୍କଦ୍ୱାରା ରଚିତ ସାବର୍ଣ୍ଣୀ ଚରିତ, ପ୍ରେମଲୋଚନା, କଳାବତୀ ଓ ନୀଳାବତୀ ନାମକ ଚାରୋଟି କାବ୍ୟ ଓ ଦଶଟି ଚଉତଶା ଆବିଷ୍କୃତ ହୋଇଛି ।

ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୃଷ୍ଠପୋଷକତାରେ ସନ୍ଥ ଅଚ୍ୟୁତାନନ୍ଦ ଦାସ, ରାଜା ପଦ୍ମନାଭଙ୍କ କନିଷ୍ଠ ଭ୍ରାତା ପୁରୁଷୋତ୍ତମ ମଙ୍ଗରାଜଙ୍କ ପୃଷ୍ଠ-ପୋଷକତାରେ ଶିଶୁ ବନମାଳୀ ଦାସ ଓ ଯୁବରାଜ ପାର୍ଥ ଶ୍ରୀଚନ୍ଦନଙ୍କ ପୃଷ୍ଠ-ପୋଷକତାରେ କବି ବସ୍ତ୍ରଦାସ ବହୁ କାବ୍ୟ କବିତା ରଚନା କରି ରଣପୁର ରାଜ୍ୟର ଗୌରବ ବୃଦ୍ଧି କରାଇଛନ୍ତି ।

ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ରାଜତ୍ୱରେ ଯୁବରାଜ ପାର୍ଥ ଶ୍ରୀଚନ୍ଦନ ରଣପୁର ଗଡରେ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ଏହି ମନ୍ଦିରର କାରୁକାର୍ଯ୍ୟ ଅତି ଚମତ୍କାର । 'ମଣିନାଗେ' କାବ୍ୟରେ ଏହା ନିମ୍ନ ମତେ ବର୍ଣ୍ଣିତ ହୋଇଛି —

"ଚଣ୍ଡେଶ୍ୱରଙ୍କର ମନ୍ଦିର ସୁଷମା
ଆକର୍ଷଇ ଦୃଷ୍ଟି ଅତି ଅନୁପମା ।।
ସବୁଠାରୁ ବଳି ତା କମନୀୟତା
ଲଖିରହେ ଆଖି ଫେଡ଼ିନାହିଁ ପତା ।।
ମାଡ଼ୁଥିଲେ ଦୃଷ୍ଟି ତା' ସୁନ୍ଦର ପଣକୁ
ନ ଭୁଲାଇ ସ୍ତୁତି କରେ ତା' ଗୁଣକୁ ।।
ଚଣ୍ଡୀଧର ରଖେ ଏ ବଡ଼ ଆଶ୍ଚର୍ଯ୍ୟ
ଅତି ଚମତ୍କାର ଏହାର ଭାସ୍କର୍ଯ୍ୟ ।।"

ରାଜା ପଦ୍ମନାଭ ନରେନ୍ଦ୍ର କ୍ଷମତା-ସମ୍ପନ୍ନ ବ୍ୟକ୍ତି ଥିଲେ । ସାମନ୍ତ ମଣ୍ଡଳୀରେ ତାଙ୍କର ସ୍ଥାନ ଥିଲା ସର୍ବପ୍ରଥମ । ସେ ଗଜପତିଙ୍କ ଠାରୁ କେତେକ ସମ୍ମାନ ଜନକ ଉପହାର ପାଇଥିଲେ । ଏହା ନିମ୍ନରେ ପ୍ରଦାନ କଲା ।

## ଶ୍ରୀ ଶ୍ରୀ ଗଜପତି ମୁକୁନ୍ଦ ଦେବ ମହାରାଜାଙ୍କ ଶ୍ରୀଛାମୁରୁ ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପ୍ରତି ସନନ୍ଦରେ ସମ୍ମାନସୂଚକ ବ୍ୟବସ୍ଥା ।

୧-ମସ୍ତକ ଉପରେ ଖିଡକ ପାଗ, ୨-ଧବଳ ଓ କଳାଛତ୍ର ୩-ବଡ ଦେଉଳରେ ବଡ ପରିଛା ପଣ । ପାଲିଙ୍କିରେ ବସି ବଡ ଦେଉଳ କଳ୍ପବଟ ମୂଳ ପର୍ଯ୍ୟନ୍ତ ଯିବା ଅଧିକାର, ୪- ହାତୀ ଉପରେ ଅମାରୀ, ୫- କାହାଳୀ, ୬- ସାବନ୍ତକ ନଉବାତ, ୭- ହାତୀ ଉପରେ ଶଙ୍ଖ ନିଶାଣ, ୮- ପାଲିଙ୍କି ଆଗ ପଛେ ନାରଙ୍ଗୀ—(୧), ୯-ଦୁଇଟି ଚାମର ଓ ମୟୂର ଝୁଲ ୧୦- ଦୁଇଟି ଚନ୍ଦ୍ର ସୂର୍ଯ୍ୟ ହାସ, ୧୧- ଦୁଇଟି ରୂପା ଆଶା ନଖୀ - (୨), ୧୨- ସୁବର୍ଣ୍ଣ ଧଣ୍ଡା— (୩), ୧୩- ଶଙ୍ଖ ଜଙ୍ଗାଳ (୪), ୧୪ ପାଲିଙ୍କିରେ ପଠକା, ୧୫- ପାଲିଙ୍କି ଛତା ଉପରେ ମଲ ମଲ ଚାଦର, ୧୬- ବାରୁ ବେକରେ ପଟୁକା, ୧୭ ମସ୍ତକ ଉପରେ ବକ ସାମଲ ବାନା, ୧୮- ଘୋଡା ଉପରେ ନାଗରା ୧୯- ହାତୀ ଉପରେ ଧଂସା (୫), ୨୦-ଓଟ ଉପରେ ଦମାମ୍, ୨୧-ଖିଡକ ପାଗ ଉପରେ ନଟକଣ (୬)

## ରାଣୀଙ୍କ ସକାଶେ ମର୍ଯ୍ୟଦା

୧- ଭିତର ବେଢା ଗ୍ରାମ୍ୟରେ ପାଞ୍ଚ ମହାଦେଇଙ୍କ ପଦ ୨- ଚନ୍ଦ୍ର ସୂର୍ଯ୍ୟ ଉହାଡ (୭) ୩-ମଗର ମୁହାଁ ପାଲିଙ୍କି, ୪-ବଡ଼ ଦେଉଳରେ ପାଲିଙ୍କିରେ ବସି କଳ୍ପବଟ ମୂଳ ପର୍ଯ୍ୟନ୍ତ ଯିବା ଅଧିକାର ।

## ଯୁବରାଜଙ୍କ ପାଇଁ ମର୍ଯ୍ୟଦା

୧-ଅଠର ଜଣ ଯୁବରାଜ ମାନଙ୍କ ପାଇଁ ଅଠରଟି ପଦ, ୨- ଅଠର ଜଣଙ୍କ ପାଇଁ ଅଠରଟି ହାସ, ୩-ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଗ୍ରାମ୍ୟ ଦରଶନ, ୪-ଧ୍ୱଜବଜ୍ର ପାର୍ଶ୍ୱ ଶ୍ରୀଚନ୍ଦନଙ୍କ ପାଇଁ ଯାଉଁଳ ଓ ଗୋଟିକିଆ ମଶାଲ, ୫-ବଡ ଦେଉଳରେ ବଡ ପରିଛା ପଣ, ୬-ସୁନା ଛଡ, ୭- ଅର୍ଗଳ ଠାରେ ଚାମର ସେବା, ୮-ଶାଢ଼ୀ ପରମ୍ପର ମାଫିକେ, ୯ ଛତିଶା ନିଯୋଗ ଗହଣରେ ବସାକୁ ଫେରିବା

## ଶ୍ରୀକ୍ଷେତ୍ରକୁ ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ବିଜୟ ବେଳକୁ

୧-ଅଠର ନଳ ଠାରୁ ଦେବାନ୍ କମ୍ବା ବକ୍ସି – ଦୁଇଜଣଙ୍କ ମଧ୍ୟରୁ ଜଣେ ଯାଇ ପାଛୋଟି ନେଇ ଆସିବେ, ୨-କଳା ଓ ଧଳା ଛତ୍ର, ୩-ଚାମର ଓ ଦୁଇଟି

ମୟୂର ଝୁଲ, ୪-ଝାସ, ଝାଲର, ପଙ୍ଖା, ଗଧା, ୫-ଶ୍ୱେତଚାମର, ଘଣ୍ଟ ଓ ମଙ୍ଗଳ ଗାୟକମାନେ ଥିବେ, ୬- ଘୋଡା ଉପରେ ନାଗରା, ୭- ସୁବର୍ଣ୍ଣ କୁମ୍ଭ ପାଲଙ୍କି ଉପରେ ଶୁକ୍ଳ ସୁନ୍ଦର ବଇରଖ, ୮- ଘୋଡା ବେକରେ ଚନ୍ଦ୍ରା, ୯-ଯାନ୍ଥିଲ ଓ ଗୋଟିକିଆ ମଶାଲ ଦେବାର୍ଚ୍ଚନ ଯାଏ ଯିବ, ୧୦- ସର୍ବୋଚ୍ଚ ବାଜିବାକୁ ସହିତ ଶ୍ରୀକ୍ଷେତ୍ରରୁ ମର୍ଯ୍ୟାଦା ହେବ ।

※ ୧-ନାରଙ୍ଗୀ-କାଠରେ ପ୍ରସ୍ତୁତ ସ୍ୱର୍ଣ୍ଣାଦି ଜଡିତ ଏକ ପ୍ରକାର ଛଡ ।

୨-ଆଣ ନଖୀ-ବାଡରେ ରୂପାଖୋଳ ହୋଇ ଉପରେ ବାଘନଖ ବସିଥାଏ ।

୩-ସୁରେଶ ଧଣ୍ଡା-କାଠରେ ରୂପା ଛୁଆଣି ହୋଇ ଉପରେ ଏକ ମାଳ ଲମ୍ବିଥାଏ ।

୪-ଶବ୍ଦ ଜଙ୍ଗାଳ-ଷୃଡକୋଣିଆ ବସ୍ତ୍ରଖଣ୍ଡ ଦେହରେ ଛବି ଅଙ୍କା ଯାଇଥାଏ ।

୫-ଧାଂସା-ଏକ ପ୍ରକାର ଗୋଲକାର ବାଦ୍ୟ ।

୬-ନଟକଣ-ସ୍ୱର୍ଣ୍ଣ ରତ୍ନାଦିରେ ନିର୍ମିତ ଏକ ପ୍ରକାର ଅଳଙ୍କାର ।

୭ ଚନ୍ଦ୍ର ସୂର୍ଯ୍ୟ ଉହାଡ଼-ବସ୍ତ୍ରରେ ପ୍ରସ୍ତୁତ ସବାଗର ଖୋଳ । ଏହାର ଏକ ପାର୍ଶ୍ୱରେ ଚନ୍ଦ୍ରଙ୍କ ଛବି ଓ ଅନ୍ୟ ପାର୍ଶ୍ୱରେ ସୂର୍ଯ୍ୟଙ୍କ ଛବି ଯଥାକ୍ରମେ ରୂପା ଓ ସୁନା ତାରରେ ଅଙ୍କିତ ହୋଇଥାଏ । ଏହାକୁ ଚନ୍ଦ୍ର ସୂର୍ଯ୍ୟ ଉହାଡ କହନ୍ତି ।

## କୁଞ୍ଜ ବିହାରୀ ସିଂହ ନରେନ୍ଦ୍ର
### ଖ୍ରୀ ୧୬୮୪ – ୧୭୦୦

ରଣପୁରର ପ୍ରଖ୍ୟାତଯଶା ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଜୀବିତାବସ୍ଥାରେ ତାଙ୍କର ଅଠରଜଣ ପୁତ୍ର ନିହତ ହୋଇଥିଲେ । ଏହା ତାଙ୍କ ଶେଷ ଜୀବନରେ ଦୁଃଖମୟ ସମୟ ଥିଲା । ସେ ପୌତ୍ର (ଯୁବରାଜ ପାର୍ଥ ଶ୍ରୀଚନ୍ଦନଙ୍କ ପୁତ୍ର) କୁଞ୍ଜ ବିହାରୀର ମୁଖ ଅବଲୋକନ କରି ସମସ୍ତ ଅତିବାହିତ କରିଥିଲେ ।

ତାଙ୍କ ବିୟୋଗ ପରେ କୁଞ୍ଜ ବିହାରୀ ସିଂହ ନରେନ୍ଦ୍ର ରାଜା ହେଲେ । ରଣପୁର ରାଜ୍ୟର ଦକ୍ଷିଣ ସୀମାରେ ଏକ ଗ୍ରାମ ଥିଲା । ଏହାର ନାମ ଙ୍ଖେଯୋଡ ଓ ଏହା ଖଣ୍ଡଣ ମାଳାଞ୍ଚଳ ମଧ୍ୟରେ ଅବସ୍ଥିତ । ପୂର୍ବେ ସେଠାରେ ୧୨୦ଟି ଶଙ୍ଖୁଆ ଜାତିର ପରିବାର ବାସ କରୁଥିଲେ । ଦୁଇ ଦୁଇଟି ପରିବାର ଏକାଠି ହୋଇ ବିଭିନ୍ନ ସ୍ଥାନରେ ଦୁର୍ଗ ନିର୍ମାଣ କରିଥିଲେ । ଶଙ୍ଖୁଆମାନେ

ଯୋଡ ଯୋଡ ହୋଇ ବାସ କରିଥିବାରୁ ରାଜା ଏହି ଗ୍ରାମକୁ ଶଙ୍ଖଯୋଡ ନାମକରଣ କଲେ । ମାଳ ମଧ୍ୟରେ ଅବସ୍ଥିତ ଏହି ଗ୍ରାମ ନିକଟରେ ନିବିଡ଼ ଅରଣ୍ୟ ବର୍ତ୍ତମାନ ମଧ୍ୟ ରହିଛି । ପ୍ରତିଦିନ ବହୁ ପରିମାଣରେ ଶାଳ, ଶାଗୁଆନ ଆଦି ମୂଲ୍ୟବାନ କାଠ ସରକାରଙ୍କ ଜଙ୍ଗଲ ବିଭାଗ କର୍ମଚାରୀଙ୍କ ଜ୍ଞାତ ବା ଅଜ୍ଞାତରେ ପ୍ରତିଦିନ ଏଠାରୁ ବାହାରକୁ ଚାଲାଣ ହୋଇଥାଏ । ଏହା ସତ୍ତ୍ୱେ ଘଞ୍ଚ ଜଙ୍ଗଲ ଅଦ୍ୟାପି ରହିଛି ଓ ଅନେକ ବ୍ୟାଘ୍ର ମଧ୍ୟ ଦେଖାଯାଆନ୍ତି ।

ଶଙ୍ଖଯୋଡରେ ବାସ କରୁଥିବା ଶଙ୍ଖୁଆମାନଙ୍କ ପାଇଁ କୌଣସି ଦେବାଳୟ ନଥିଲା । ଏଣୁ ସେମାନେ ରାଜା କୁଞ୍ଜ ନରେନ୍ଦ୍ରଙ୍କୁ ଅନୁରୋଧ କରିବାରୁ, ସେ ସେଠାରେ ଏକ ମହାଦେବ ମନ୍ଦିର ନିର୍ମାଣ କରାଇଥିଲେ । ଏହା ଗଙ୍ଗେଶ୍ୱର ମହାଦେବ ମନ୍ଦିର ରୂପେ ପରିଚିତ । କେହି କେହି କୁହନ୍ତି ଗଙ୍ଗବଂଶର କୌଣସି ନରପତି ଏହି ମନ୍ଦିର ନିର୍ମାଣ କରିଥିଲେ । ଦୀର୍ଘଦିନ ଧରି ଏହା ଜଙ୍ଗଲ ମଧ୍ୟରେ ପରିତ୍ୟକ୍ତ ଅବସ୍ଥାରେ ରହିବା ପରେ ନଷ୍ଟ ହୋଇ ଯାଇଥିଲା । ଏଣୁ କୁଞ୍ଜ ବିହାରୀ ନରେନ୍ଦ୍ର ଏହି ମନ୍ଦିରର ପୁନଃନିର୍ମାଣ କରିଥିଲେ । ଏଥିରୁ କେଉଁ ଉକ୍ତି ଠିକ୍ ତାହା ଅଧିକ ଗବେଷଣା କଲେ ଜଣାପଡିବ । ଏହି ମନ୍ଦିରଟି ସମ୍ପୂର୍ଣ୍ଣ ଭାଙ୍ଗି ଯାଇଛି । କେବଳ ମନ୍ଦିର ସମ୍ମୁଖରେ ଥିବା ଦୁଇଟି ସିଂହ ମୂର୍ତ୍ତିର କାରୁକାର୍ଯ୍ୟ ଅବଲୋକନ କଲେ ଏହାର ସ୍ୱକୀୟତା ଓ ଉତ୍କର୍ଷତା ଅନୁମିତ ହୁଏ ।

## କୃଷ୍ଣଚନ୍ଦ୍ର ସିଂହ ନରେନ୍ଦ୍ର
### ଖ୍ରୀ ୧୭୦୦—୧୭୨୧

ରାଜା କୁଞ୍ଜ ବିହାରୀଙ୍କ ପରେ ପୁତ୍ର କୃଷ୍ଣଚନ୍ଦ୍ର ରାଜା ହୋଇଥିଲେ । ତାଙ୍କର ଅନ୍ୟ ଦୁଇ ଭାଇଙ୍କ ନାମ ପଟ୍ଟାପୁତ୍ର ପୂର୍ଣ୍ଣାନନ୍ଦ ସିଂହ ଓ ଟିକାପୁତ୍ର ସୁଦର୍ଶନ ଭରମଲ୍ଲ । ରାଜା କୃଷ୍ଣଚନ୍ଦ୍ର ଅପୁତ୍ରିକ ଥିଲେ । ସେ ଟିକାପୁତ୍ର ଭରମଲ୍ଲଙ୍କୁ ଭଲ ପାଉଥିଲେ । ଏଥିରେ ପଟ୍ଟାପୁତ୍ର ପୂର୍ଣ୍ଣାନନ୍ଦ ସିଂହଙ୍କ ପୁତ୍ର ଗିରିଧାରୀ ବାଗିଚ ଅସନ୍ତୁଷ୍ଟ ହୋଇଥିଲେ । କୃଷ୍ଣଚନ୍ଦ୍ର ନରେନ୍ଦ୍ରଙ୍କ ପରେ ଭରମଲ୍ଲଙ୍କ ପୋଷ୍ୟପୁତ୍ର ରୂପେ ସ୍ୱୀକୃତ ହୋଇ ସିଂହାସନ ଅଧିକାର କରିବା

ସମ୍ଭାବନା ଥିବାରୁ ଗିରଧାରୀ ବାଗିଡ ତାଙ୍କୁ ନିହତ କରିବାକୁ ଖୋଜୁଥିଲେ । ଏଣୁ ସେ ଖୋର୍ଦ୍ଧା ଯାଇ ବଂଶରେ ରାଜା ପୁରୁଷୋତ୍ତମ ଦେବ (୨ୟ)ଙ୍କ ସହ ବନ୍ଧୁତା ସ୍ଥାପନ କରି ତାଙ୍କ ଆଶ୍ରୟରେ ରହିଲେ । ଗଜପତି ପୁରୁଷୋତ୍ତମ ଦେବଙ୍କ ପରାମର୍ଶରେ ବହୁ ଫଉଜ ଆଣି ରଣପୁର ଗଡରେ ପ୍ରବେଶ କରି ଭୀରମଲ୍ଲଙ୍କ ପୁତ୍ରକୁ ନିହତ କଲେ । ଏହି ଘଟଣାରେ ସୁଦର୍ଶନ ଭଞ୍ଜମଲ୍ଲ ଓ ରଣପୁର ସୈନ୍ୟ ଯୁଦ୍ଧର ସମ୍ମୁଖୀନ ହେବାରୁ ସେମାନେ ପଳାୟନ କଲେ । ଏହା ପରଠାରୁ ରାଜା କୃଷ୍ଣଚନ୍ଦ୍ର ନରେନ୍ଦ୍ରଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଗିରଧାରୀ ବାଗିଡ ରଣପୁର ଆସିନଥିଲେ । ସେ ଖୋର୍ଦ୍ଧାରେ ଅବସ୍ଥାନ କରି ଗଜପତିଙ୍କର ସେନାପତି ରୂପେ କାର୍ଯ୍ୟ କରୁଥିଲେ । ଉପରୋକ୍ତ ତଥ୍ୟ କବି ଶ୍ରୀଧର ମିଶ୍ରଙ୍କ ଲେଖାରେ ନିମ୍ନମତେ ସ୍ଥାନ ପାଇଛି ।

"ଏ ନରେଶ୍ୱର ଅପୁତ୍ରିକ ହୋଇ ପୂର୍ଣ୍ଣାନନ୍ଦ ସିଂହ ଏହାଙ୍କ ଭାଇ
ତାଙ୍କ ପୁତ୍ରନାମ ଗିରଧାରୀ ବାଗିଡ କୃଷ୍ଣଚନ୍ଦ୍ର ନରେନ୍ଦ୍ରଙ୍କ ସାଙ୍ଗରେ
ଦ୍ୱନ୍ଦ କରି ଏଥୁ ଗଲେ ଯେ
ମହାରାଜାଙ୍କ ଛାମୁରେ ରହି କହି ଫଉଜ ଆଣି ଯୁଝିଲେ ଯେ ।
ମାଇଲେ ଭୀରମଲ୍ଲଙ୍କ ପୁଅକୁ ପାଇଁ ତାତ ତାଙ୍କ ସେ ଖବରକୁ
ଅତି କୋପେ ଯୁଦ୍ଧ ଭୂମିକୁ ଆସି ଲଢ଼ାଏ ମାରୁ ଫଳ ଚଢ଼େ ଖସି
ଦେଖି ଶତ୍ରେ ଭୟ ପାଇ ଯେ
ଫେରାଇ ଫଉଜ ମହାରାଜାଙ୍କର ଅନୁଗତେ ଥାନ୍ତି ରହି ଯେ"

ରାଜା କୃଷ୍ଣଚନ୍ଦ୍ର ସିଂହ ନରେନ୍ଦ୍ରଙ୍କ ସମୟରେ ରଣପୁର ଗଡ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ଏକ ପ୍ରଧାନ କେନ୍ଦ୍ର ଥିଲା । ବହୁ ଦୂର ଦୂରାନ୍ତରୁ ସଂସ୍କୃତ ପଣ୍ଡିତମାନେ ଏଠାକୁ ଆସି ପୁରସ୍କୃତ ହେଉଥିଲେ । ତତ୍କାଳୀନ ଓଡ଼ିଶାର ଗଜପତି ଥିଲେ ପୁରୁଷୋତ୍ତମ ଦେବ (୨ୟ) । ଐତିହାସିକ ଶ୍ରୀ କେଦାର ନାଥ ମହାପାତ୍ର ତାଙ୍କ 'ଖୁରୁଧା ଇତିହାସ" ପୁସ୍ତକର ୭୮ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ, "ଗଜପତି ପୁରୁଷୋତ୍ତମ ଦେବ (୨ୟ)ଙ୍କ ସମୟରେ ରଣପୁର ଗଡ଼, ଗଡ ମଧୁପୁର, ବଡ ଖେମୁଣ୍ଡି ଓ ପାରଳାଖେମୁଣ୍ଡି ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା ।"

# ଗିରିଧାରୀ ସିଂହ ନରେନ୍ଦ୍ର ମହାପାତ୍ର

## ଖ୍ରୀ ୧୭୨୧—୧୭୪୪

ରାଜା କୃଷ୍ଣଚନ୍ଦ୍ର ନରେନ୍ଦ୍ରଙ୍କ ପରଲୋକ ଗମନ ପରେ ତାଙ୍କ ଭ୍ରାତୃ ପୁତ୍ର ଗିରିଧାରୀ ବାଜିଡ ଟଖାର୍ଦ୍ଧା ଗଜପତିଙ୍କ ସୈନ୍ୟ ଧରି ରଣପୁର ଆସି ସିଂହାସନ ଆରୋହଣ କଲେ । ରାଜା ହେବା ପରେ ସେ ଗିରିଧାରୀ ବାଜିଡ ପରିବର୍ତ୍ତେ 'ଗିରିଧାରୀ ସିଂହ ନରେନ୍ଦ୍ର' ନାମରେ ପରିଚିତ ହେଲେ । ପରେ ଗଜପତିଙ୍କ ଠାରୁ ମହାପାତ୍ର ପଦ ପାଇଥିବାରୁ ନାମ ଶେଷରେ ପ୍ରଯୋଗ କରାଯାଇଥିଲା ।

ସେ ଗଜପତିଙ୍କର ପ୍ରଧାନ ସେନାପତି ରୂପେ ରହିଥିଲେ । ଓଡିଶାର ଗଜପତି ନରସିଂହ ଦେବ ତାଙ୍କୁ ସାତଗୋଟି ଗଡ ଉପରେ ନିୟନ୍ତ୍ରଣରେ ଅଧିକାର ଦେଇଥିଲେ । ଏହି ସାତଗୋଟି ଗଡର ନାମ ହେଲା ଗଡଙ୍କାରଦ, ଗଡ ଓରଡ, ଗଡ ବଡ ପୋଖରିଆ, ଗଡ ବଡପାରି ଗଡ ଅଟ୍ରି, ଗଡ ହଳଦିଆ ଓ ଗଡ ଛତ୍ରବୋଇ । ସେ ସାତଗୋଟି ଗଡ ଉପରେ ନିୟନ୍ତ୍ରଣ ଅଧିକାର ପାଇଥିବାରୁ ତାଙ୍କୁ "ସାତଗଡ ବେହେରା ମହାପାତ୍ର" କୁହାଯାଉ ଥିଲା । ସେ ଗଜପତିଙ୍କ ପକ୍ଷରୁ ଏହି ୭ଟି ଗଡ ନିୟନ୍ତ୍ରଣ କରୁଥିଲେ ।

ସେ ଲଚାର ଗିରିଧରପୁର ଗ୍ରାମ ସ୍ଥାପନ କରିଥିଲେ ଏବଂ ଲଚାର ଠାରେ ଶ୍ରୀ ବାଲୁଙ୍କେଶ୍ୱର ଦେବଙ୍କ ମନ୍ଦିର ନିର୍ମାଣ କରିଥିଲେ । ପୂର୍ବରୁ ଉପରେ ମଣିନାଗ ପର୍ବତସ୍ଥ ଚକାଶିଳା ଉପରେ ଦୁର୍ଗାଦେବୀ ପୂଜା ପାଉଥିଲେ । ପର୍ବତ ଉପରକୁ ଯାଇ ନିତ୍ୟ ନିକାନ ପୂଜା କରିବା ସମ୍ଭବ ନହେବାରୁ ସେ ଚକା-ଶିଳାକୁ ଛାଡ ଦୁର୍ଗା ମୂର୍ତ୍ତିଙ୍କୁ ନିଜ ରାଜପ୍ରାସାଦକୁ ନେଇ ଆସିଥିଲେ । କଥିତ ଅଛି ସେ ରାଜ ପ୍ରାସାଦରେ ଦୁର୍ଗାଦେବୀଙ୍କୁ ପୂଜାକରି ସନ୍ତୁଷ୍ଟ କରିଥିଲେ । ଫଳରେ ଦେବୀଙ୍କ ଆଶୀର୍ବାଦ ଯୋଗୁଁ ବାଣପୁର ରାଜା ହରିଚନ୍ଦନଙ୍କୁ ପରାଜିତ କରି ପଚିଆ ପାଞ୍ଚକୋଶ ମୂଲକ ଜୟ କରିଥିଲେ ।

"Original Survey and Settlement operations of Ranpur Ex-state"ର ୨୭ ପୃଷ୍ଠାରେ ନିମ୍ନମତେ ଉଲ୍ଲେଖ ଅଛି ।

"Giridhari Narendra established the village Latar and Giridharpur and constructed a temple and established the deity Sri Balunkeshwar Deb in the Latar. He brought Maninag Durga from the top of hill leaving the Chakasila there to his palace for deity worship. Through the mercy of this deity he defeated Raja Harichandan of Banpur and got five Koshas of Patia Pragana."

# ବନମାଳୀ ସିଂହ ନରେନ୍ଦ୍ର ମହାପାତ୍ର

## ଖ୍ରୀ ୧୬୪୪ – ୧୭୭୫

ରାଜା ବନମାଳୀ ନରେନ୍ଦ୍ରଙ୍କ ପାଇଁ 'ରଣପୁର' ଗର୍ବ ଅନୁଭବ କରେ । ସେ ଥିଲେ ଦକ୍ଷ କଳାକାର ଓ ଶିଳ୍ପକଳାର ପ୍ରଧାନ ପୃଷ୍ଠପୋଷକ । ରାଜ କୂଳରେ ଜନ୍ମହୋଇ ମଧ୍ୟ ନିଜ ସାଧନା ବଳରେ ସେ କଳାର ଉତ୍କର୍ଷତା ପାଇଁ ପ୍ରସିଦ୍ଧ ଉତ୍କଳ ଭୂମିର ଜଣେ ଯୋଗଜନ୍ମା ଶିଳ୍ପୀରୂପେ ଖ୍ୟାତି ଅର୍ଜନ କରିଛନ୍ତି । ସେ ଯୁବରାଜ ଥିବାବେଳେ ଏକ କମନୀୟ "ବିରଞ୍ଚି ନାରାୟଣ ମୂର୍ତ୍ତି" ନିର୍ମାଣ କରିଥିଲେ । ଏହି ଅନୁପମ ମୂର୍ତ୍ତି ଗଞ୍ଜାମର ବୁଗୁଡାଠାରେ ଶୋଭା ପାଉଅଛି । ଏହି ମୂର୍ତ୍ତିର ପାଦପଦ୍ମରେ ନିମ୍ନଲିଖିତ ଶ୍ଳୋକ ସ୍ଥାନ ପାଇଛି ।

"ଶକାବ୍ଦେ ରସ ସୀତାଂଶୁ କଳାନାଥ କଳାନ୍ୱିତେ
ବନମାଳୀ ନରେନ୍ଦ୍ରେଣ ପ୍ରତିମେୟଂ ବିନିର୍ମିତା ।"

ବନମାଳୀ ନରେନ୍ଦ୍ର ରାଜା ହେବା ପରେ ମଣିନାଗ ପର୍ବତ ଉପରେ ପ୍ରତିଷ୍ଠିତ ଦୁର୍ଗାଙ୍କ ମନ୍ଦିରରେ ଏକ ଶପୂନ ଦୁର୍ଗାମୂର୍ତ୍ତି ସ୍ଥାପନ କରିଥିଲେ । ଏହି କମନୀୟ ଦୁର୍ଗାମୂର୍ତ୍ତି ତାଙ୍କ ସ୍ୱହସ୍ତ ନିର୍ମିତ ଅଟେ । ଏହି ମୂର୍ତ୍ତିର ପାଦ ପଦ୍ମରେ ନିମ୍ନଲିଖିତ ଶ୍ଳୋକ ଖନନ ହୋଇଥିଲା ।

"ପୂର୍ଣ୍ଣାନନ୍ଦ ତନୁଭବ ଗିରିଧରଃ ରାଜେନ୍ଦ୍ର ଚୂଡାମଣିଃ
ତତ୍ପୁତ୍ରଃ ବନମାଳୀ ନାମ ନୃପତି ଭୂଖଣ୍ଡ ଭୂଷାମଣିଃ ।।
ନାନା କଳ୍ପ ବିକଳ୍ପ ଶିଳ୍ପ ରଚନାଙ୍କୁ ପାର ପାରଙ୍ଗତାଃ
ମୂର୍ତ୍ତିଂ ହୈମବତୀ ମତିବ ରୁଚିରାଂ ସେୟଂ ସ୍ୱୟଂ ନିର୍ମିତାଃ ।।"

ରଜା ବନମାଳୀ ନରେନ୍ଦ୍ରଙ୍କ ମୃତ୍ୟୁ ପରେ ଓଡ଼ିଶାର ଗଜପତି ମହାରାଜାଙ୍କ ନିର୍ଦ୍ଦେଶରେ ଉକ୍ତ ମୂର୍ତ୍ତି ଅପହରଣ ହୋଇ ସାକ୍ଷୀଗୋପାଳ ନିକଟସ୍ଥ ବୀର ରାମଚନ୍ଦ୍ରପୁର ଶାସନରେ ପ୍ରତିଷ୍ଠା ହୋଇଥିଲା । ଅଦ୍ୟାବଧି ମଣିନାଗ ମୂର୍ତ୍ତି ସେଠାରେ ପୂଜା ପାଉଛନ୍ତି ।

ବୋଲଗଡ଼ ବ୍ଲକ ବାଙ୍କୋଇଠାରେ ଅବସ୍ଥିତ ଶ୍ରୀ ତାରେଶ୍ୱର ଦେବଙ୍କ ପ୍ରସ୍ତର ବୃଷଭ ମୂର୍ତ୍ତି ବନମାଳୀ ନରେନ୍ଦ୍ରଙ୍କ କୀର୍ତ୍ତି ଅଟେ । ଏହି ପ୍ରସ୍ତର ନିର୍ମିତ ବୃଷଭର କାରୁକାର୍ଯ୍ୟ ଅତି ଅନୁପମ ଏଭଳି ପ୍ରକାଣ୍ଡ ବୃଷଭ ମୂର୍ତ୍ତି ଓଡ଼ିଶାର ଅନ୍ୟ କୌଣସି ଶିବ ମନ୍ଦିରରେ ଦୃଷ୍ଟିଗୋଚର ହୁଏନାହିଁ । ବାଙ୍କୋଇର କବି ନରସିଂହ ହରିଚନ୍ଦନ ବୃଷଭ ସମ୍ବନ୍ଧରେ ନିମ୍ନୋକ୍ତ ବର୍ଣ୍ଣନା କରିଛନ୍ତି ।

"ସମ୍ମୁଖରେ ବୃଷଭ ସିଂହଠାରୁ ବଳିବ
ତେଜ ପ୍ରକର୍ଷ ଗମନରେ
ଘଣ୍ଟି ଘାଗୁଡ଼ି ଯୁକ୍ତ ହୋଇ ଅତି ବରିଷ
ବରାଜ ଅଛୁ ହରଷରେ । ୧
ଅତି ପ୍ରକାଣ୍ଡ ଛବି ତା'ର ଦେଖି ଉଭେ ସୁନାଗିର
ତେଣୁ କି ଭସ୍ମ କରି ତବ ପାଶକୁ ଉର
ନଆସେ ମହାଶ କ୍ରଶ୍ୱର, ହେ ତାରେଶ୍ୱର ।" ୨

ବାଙ୍କୋଇ ତାରେଶ୍ୱର ଦେବଙ୍କ ପୀଠରେ ଦେବ ତାରେଶ୍ୱରଙ୍କ ସମ୍ମୁଖରେ ଥିବା ଭୈରବୀ ସିଂହ ମୂର୍ତ୍ତି ହସ୍ତୀର କମନୀୟତା ଦର୍ଶକ ପ୍ରାଣକୁ ବିମୁଗ୍ଧ କରେ । ଏହା ମଧ୍ୟ ବନମାଳୀ ନରେନ୍ଦ୍ରଙ୍କ ସ୍ୱହସ୍ତ ନିର୍ମିତ କୀର୍ତ୍ତି ଅଟେ ।

ପୂର୍ବେ ବାଙ୍କୋଇ ରଣପୁର ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ପରେ ବାଙ୍କୋଇ ପାଞ୍ଚଗଡ଼ ରାଜ୍ୟର ରାଜଧାନୀ ହୋଇଥିଲା । ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ଖୋର୍ଦ୍ଧା ଗଜପତିଙ୍କର କେହି ସମ୍ପର୍କୀୟଙ୍କୁ ରାଜ୍ୟ ପ୍ରଦାନ କରିବା ଲକ୍ଷରେ ପାଞ୍ଚଟି ଜଣ୍ଡାରୁ ପାଞ୍ଚଟି ଗଡ଼ ଦାନସୂତ୍ରେ ଅଣାଯାଇ ଉକ୍ତ ରାଜ୍ୟ ଗଠନ ହୋଇଥିଲା । ରଣପୁର ରାଜା ବାଙ୍କୋଇ ଗଡ଼, ନୟାଗଡ଼ ରାଜା ବୋଲଗଡ଼ (ବଳଦୁର୍ଗ ବା ବଳଗଡ଼), ଖଣ୍ଡପଡ଼ା ରାଜା ମାଣିକ ଗୋଡ଼ା (ମାଣିକ୍ୟ ଗଡ଼), ବାଙ୍କୀ ରାଜା ମାଣିବନ୍ଧ ଗଡ଼ ଓ ଖୋର୍ଦ୍ଧା ଗଜପତି ଗୋଡ଼ଆଳ ଗଡ଼ ପ୍ରଦାନ କରିଥିଲେ । ମାତ୍ର ଦୁଇଟି ପୁରୁଷ ପରେ ଏହି ରାଜବଂଶ ନିଃସନ୍ତାନ ହେତୁ ଗଜପତିଙ୍କ ରାଜ୍ୟରେ ସାମିଲ ହୋଇଥିଲା ।

ରାଜା ବନମାଳୀ ନରେନ୍ଦ୍ର ବାଙ୍କୋଇ ତାରେଶ୍ୱର ଦେବଙ୍କ ପାଇଁ ଏକ ମଣ୍ଡପ ନିର୍ମାଣ କରିଥିଲେ ଓ ଏହା ସମ୍ମୁଖରେ ବୃଷଭ ମୂର୍ତ୍ତି ରହିଥିଲା । ୧୯୦୪ ଖ୍ରୀଷ୍ଟାବ୍ଦରେ ମାଣିକ ବେଉ୍ଧା ନାମକ ଜନୈକା ବିଧବା ବ୍ରାହ୍ମଣୀ ତାଙ୍କର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ବ୍ୟୟକରି ତାରେଶ୍ୱର ଦେବ ଓ ତାରେଣୀଙ୍କ ପାଇଁ ନୂତନ ମନ୍ଦିର ନିର୍ମାଣ କରିଥିଲେ ।

କଥିତ ଅଛି ବାଙ୍କୋଇ ତାରେଶ୍ୱର ଦେବଙ୍କ ପାଇଁ ନିର୍ମିତ ବୃଷଭ ମୂର୍ତ୍ତି ବର୍ତ୍ତମାନର ରଣପୁର ତହସିଲର ବହିଃସୀମାରେ ଥିବା ଶଗଡ଼ ଭଙ୍ଗାର ଏକ ପାହାଡ଼ରୁ ପ୍ରସ୍ତର କଟାଯାଇ ନିର୍ମିତ ହୋଇଥିଲା । ଏହାର ସ୍ମାରକୀ ସ୍ୱରୂପ ଏହି ପାହାଡ଼ ନିକଟରେ ଏକ 'ବୃଷଭ ଗାଡ଼ଆ' ଅଛି । ବନମାଳୀ ନରେନ୍ଦ୍ର ଏହି ବିଶାଳକାୟ ବୃଷଭମୂର୍ତ୍ତି ଭୁବନେଶ୍ୱର ଲିଙ୍ଗରାଜ ଦେବଙ୍କୁ ସମର୍ପଣ କରିବା ପାଇଁ ମନସ୍ଥ କରିଥିଲେ । କିନ୍ତୁ ଏହି ପ୍ରକାଣ୍ଡ ମୂର୍ତ୍ତିକୁ ଭୁବନେଶ୍ୱର ବହନ କରିନେବା ସମ୍ଭବ ହୋଇନଥିଲା । ଏଣୁ ଲିଙ୍ଗରାଜ ମହାପ୍ରଭୁଙ୍କ ପୂଜାବିଧି ସହ ସାମଞ୍ଜସ୍ୟ ଥିବା ତାରେଶ୍ୱର ଦେବଙ୍କ ପୀଠରେ ଏହି ବୃଷଭ ମୂର୍ତ୍ତି ସ୍ଥାପନ କରିଥିଲେ । ତାରେଶ୍ୱର ଦେବଙ୍କଠାରେ ଲିଙ୍ଗରାଜ ଦେବଙ୍କ ଭଳି ଉଭୟ ତୁଳସୀ ଓ ବେଲପତ୍ର ସମର୍ପଣ ପୂର୍ବକ ହରି ଓ ହରଙ୍କପୂଜା ଏକତ୍ର ହୋଇଥାଏ । ଏହି ଠାକୁରଙ୍କ ସେବାପୂଜା ପାଇଁ ବନମାଳୀ ନରେନ୍ଦ୍ର ପାଞ୍ଚବାଟି ଜମି ଖଞ୍ଜି ଥିଲେ । ପରେ ବାଙ୍କୋଇ ଗ୍ରାମ ଖୋର୍ଦ୍ଧା ଗଜପତିଙ୍କ ଅଧିନକୁ ଆସିବା ପରେ ଗଜପତି ଶ୍ରୀ ତାରେଶ୍ୱର ଦେବଙ୍କ ସେବା ପୂଜା ପାଇଁ ଷାଠିଏ ବାଟି ଭୂମିବାଡ଼ି ଖଞ୍ଜା ଦେଇଥିଲେ ।

ବନମାଳୀ ନରେନ୍ଦ୍ରଙ୍କ ଦ୍ୱାରା ନିର୍ମିତ ଭୁବନେଶ୍ୱର ଅନନ୍ତ ବାସୁଦେବଙ୍କ ମୂର୍ତ୍ତି ତାଙ୍କ କଳାକୃତିର ଉତ୍କର୍ଷତା ପ୍ରମାଣ କରେ । O. S. S. O R. ର ୬୨ ପୃଷ୍ଠାରେ ଉଲ୍ଲେଖ ଅଛି ଯେ, "He was very expert in statuary. Images of stone made by him are still found in many places within the Killa. He made three idolsRama, Laxman and Sita in his hand and established them in the temple just near the temple of Puri Jagannath on the southern side behind the Mukti-mandap. He made the stone bulk Tareswar Deb of

Bankoi. He also made an image of stone of Sri Anant Basudeb which is now worshipped in a temple right to that of Sri Lingaraj Deb of Bhubaneswar. The name of this Raja and some other details are written on the brass simhasan of this image."

ରଣପୁର ଜଗନ୍ନାଥ ମନ୍ଦିର ସମ୍ମୁଖରେ ଅବସ୍ଥିତ ପ୍ରକାଣ୍ଡ ସିଂହମୂର୍ତ୍ତି ଦ୍ୱୟ ବନମାଳୀ ନରେନ୍ଦ୍ରଙ୍କ କୀର୍ତ୍ତି ଅଟେ । ସିଂହର ଅପୂର୍ବ ଠାଣି ଓ ଭଙ୍ଗୀରେ ବାସ୍ତବତା ପ୍ରସ୍ଫୁଟମାନ ହେଉଥିବାରୁ ଦର୍ଶକର ପ୍ରାଣକୁ ବିମୋହିତ କରିଥାଏ । "ମଣିନାଗେ" କାବ୍ୟରେ ବନମାଳୀ ନରେନ୍ଦ୍ରଙ୍କ କୀର୍ତ୍ତି ସମ୍ବନ୍ଧରେ ନିମ୍ନମତେ ପ୍ରକାଶ ପାଇଛି ।

' ବନମାଳୀ ଦେବ ନରେନ୍ଦ୍ର କୀରତି
ସେ ଅନନ୍ତ ବାସୁଦେବଙ୍କ ମୂରତି ।
ଭୁବନେଶ୍ୱରରେ ଅଦ୍ୟାପି ଚେତାଇ
ହିଏ ତାମ୍ରଲିପି ଏ ତଥ୍ୟ ଯୋଗାଇ ।
ବାଙ୍କୋଇ ପ୍ରସ୍ତର ଦୃଷଦ ସୁଷମା
ମଣିନାଗ ମୂର୍ତ୍ତି ଅଟ ଅନୁପମା ।
ସିଂହଦ୍ୱାରେ ସିଂହ ଯୁଗଳକ ରଡ
ସୁଦକ୍ଷ ବିନ୍ଧାଣୀ ଯାଇଅଛି ଗଢ଼ି ।"

ସେ ପୁଣି ଜଗନ୍ନାଥ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରି ସ୍ଥାପନ କରିଥିଲେ । ସେ ରଣପୁର ଗଡର ଶ୍ରୀ ହରିହରେଶ୍ୱର ଦେବ ଦଣ୍ଡୀ ବାଲୁଙ୍କେଶ୍ୱର ଦେବଙ୍କ ମନ୍ଦିରର ପ୍ରାଚୀର ଓ ରଣପୁର ଜଗନ୍ନାଥ ମନ୍ଦିର ପରିସର ମଧ୍ୟରେ ଦେବସ୍ନାନ ମଣ୍ଡପ ନିର୍ମାଣ କରିଥିଲେ । ସେ ରଣପୁରର ବଡ ସାମୁକା ପୁଷ୍କରଣୀ ଖନନ କରିଥିଲେ । ଏହି ପୁଷ୍କରଣୀ ମଧ୍ୟରେ ଏକ ମଧ୍ୟରେ ଏକ ମନ୍ଦିର ପ୍ରତିଷ୍ଠା କରି ଠାକୁରଙ୍କ ଗୁପ ଖେଳର ପ୍ରଚଳନ କରିଥିଲେ । ଉକ୍ତ ବଡ ସାମୁକା ପୁଷ୍କରଣୀର ନାମ ଅଧୁନା ବଧି ପୁଷ୍କରଣୀ ହୋଇଛି । ଏହି ପୁଷ୍କରଣୀ ମଧ୍ୟରେ ଥିବା ମନ୍ଦିର "ବଧି ବାଲୁଙ୍କେଶ୍ୱର ଦେବ" ମନ୍ଦିର ରୂପେ ପରିଚିତ ।

ତତ୍କାଳୀନ ରଣପୁର ଗଡ ବଡଦାଣ୍ଡ ସାହି ମଧ୍ୟରେ ଶ୍ରେଷ୍ଠ ଶ୍ରେଷ୍ଠ ପାହାଡ଼ ଥିଲା । ସେ ଦାଣ୍ଡ ମଧ୍ୟରୁ ପାହାଡ କାଟି ଦାଣ୍ଡକୁ ସମତୁଲ କରିଥିଲେ । ସେ ରଣପୁର ଗଡରେ ୭୨ଟି ସାହି ଓ ୪୨ଟି ଗଳି ସୃଷ୍ଟି କରିଥିଲେ । ଆଧୁନିକ ସଂଗଠିତ ରଣପୁର ଗଡର ସେ ହେଉଛନ୍ତି ଆଦ୍ୟ ନିର୍ମାତା । ତାଙ୍କ ପୂର୍ବରୁ କିମ୍ବା ପରେ କୌଣସି ରାଜା ରଣପୁର ଗଡରେ ୪ଗୋଟି ମନ୍ଦିରର ପ୍ରତିଷ୍ଠାତା ହୋଇ ପାରିନାହାନ୍ତି । ହରିହରେଶ୍ୱର, ଦଣ୍ଡୀ ବାଲୁଙ୍କେଶ୍ୱର, ବାଘ ବାଲୁଙ୍କେଶ୍ୱର ଓ ହରଚଣ୍ଡୀଙ୍କ ମନ୍ଦିର ତାଙ୍କ ଉଜ୍ଜଳମୟ କୀର୍ତ୍ତିର ମୂକସାକ୍ଷୀ ଅଟେ ।

ସେ ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କର ଜଣେ ପ୍ରଧାନ ଭକ୍ତ ଥିଲେ । ସେ ଲିଙ୍ଗରାଜ ମହାପ୍ରଭୁଙ୍କ ସେବା ପୂଜା ପାଇଁ ଜଣେ ସେବକ ଶ୍ରୀ ଆର୍ତ୍ତି ବଡ଼ୁଙ୍କୁ ତାଳକଣି ତାରିଆ ଓ ଖଇରପଲ୍ଲୀ ମୌଜାରେ ବହୁ ପରିମାଣର ଭୂମିବାଡ଼ି ଖଞ୍ଜିଥିଲେ ।

ତଦାନୀନ୍ତନ ଝାରସୁଗୁଡାର ରାଜା ନଲ୍ଲା ସିଂହ ନିଜ ରାଜ୍ୟରେ ବିଦ୍ରୋହ ହେତୁ ରଣପୁରରେ ରାଜା ବନମାଳୀ ନରେନ୍ଦ୍ରଙ୍କ ଆଶ୍ରିତ ହୋଇଥିଲେ । ସେ ତାଙ୍କ ପାଇଁ ବଡ ଦାଣ୍ଡରେ ଘର ନିର୍ମାଣ କରି ବସବାସ କରି ରହିବାର ବ୍ୟବସ୍ଥା କରିଥିଲେ । ପରେ ସେ ରାଜା ନଲ୍ଲା ସିଂହଙ୍କ କନ୍ୟାର ପାଣିଗ୍ରହଣ କରିଥିଲେ । ଝାରସୁଗୁଡା ବିଦ୍ରୋହର ଅବସାନ ପରେ ନଲ୍ଲା ସିଂହ ନିଜ ରାଜ୍ୟକୁ ପ୍ରତ୍ୟାଗମନ କରିଥିଲେ ।

ବନମାଳୀ ନରେନ୍ଦ୍ର ଜଣେ ଦକ୍ଷ ଶିକାରୀ ଥିଲେ । ତାଙ୍କର ଶର ସନ୍ଧାନ ଥିଲା ଅବ୍ୟର୍ଥ । ସେ ଗୋଟିଏ ଗୋଟିଏ ଶରରେ ବ୍ୟାଘ୍ର ନିହତ କରି ପାରୁଥିଲେ । କ୍ଷିପ୍ର ଗତିରେ ଧାବିତ କୃଷ୍ଣସାର ମୃଗ ପଛରେ ଦୌଡି ତାକୁ ଶରରେ ନିହତ କରି ପାରୁଥିଲେ ।

ରାଜା ବନମାଳୀ ରଣପୁର ଗଡ ଜୟମଙ୍ଗଳ ସାହିରେ ଅଠରଟି ଯଜ୍ଞ କରିଥିଲେ । ଏଥିରେ ଓଡିଶାର ବିଭିନ୍ନ ପ୍ରାନ୍ତରରୁ ବହୁ ବେଦଜ୍ଞ ବ୍ରାହ୍ମଣ ନିମନ୍ତ୍ରିତ ହୋଇ ଆସିଥିଲେ । ସେ ରଣପୁର ଗଡରେ ଜଗତ ବଲ୍ଲଭ ମଠ ସ୍ଥାପନ କରିଥିଲେ । ସେ ତାଙ୍କ ନାମରେ ବନମାଳୀପୁର ଶାସନ ପ୍ରତିଷ୍ଠା କରିଥିଲେ । ଏହା ଅଧୁନା କର୍କିଆ ଗ୍ରାମର ଏକ ସାହି ରୂପେ ସ୍ଥାନ ପାଇଛି ।

ବନମାଳୀ ନରେନ୍ଦ୍ରଙ୍କ ସହ ଗଜପତି ନରସିଂହ ଦେବ (୨ୟ)ଙ୍କର କୌଣସି କାରଣରୁ ମନୋମାଳିନ୍ୟ ହୋଇ ଦୁଇ ରାଜ୍ୟ ମଧ୍ୟରେ ଯୁଦ୍ଧ ହେଲା । ଏଥିରେ ଗଜପତିଙ୍କ ଜ୍ୟେଷ୍ଠପୁତ୍ର 'ଜେନାମଣି' ନିହତ ହେଲେ । ଫଳରେ ଗଜପତି ବହୁ ସୈନ୍ୟ ସାମନ୍ତ ନେଇ ବନମାଳୀ ନରେନ୍ଦ୍ରଙ୍କୁ ବନ୍ଦୀକରି ନିହତ କରିବା ପାଇଁ ଚେଷ୍ଟା କଲେ । ଫଳରେ ସେ ରଣପୁର ଗଡ଼ ପାରଳାଖେମୁଣ୍ଡି ପଳାଇଗଲେ । ସେଠାରେ କିଛିଦିନ ଅବସ୍ଥାନ କରିଥିଲେ ।

ଶୁଣିବାକୁ ମିଳେ ଜେନାମଣି ନିହତ ହେବାରୁ ଗଜପତିଙ୍କ ପାଟ ମହାଦେଈ କୌଶଳକ୍ରମେ ବନମାଳୀ ନରେନ୍ଦ୍ରଙ୍କୁ ନିହତ କରିବାକୁ ଷଡ଼ଯନ୍ତ୍ର କଲେ । ସେତେବେଳେ ବନମାଳୀଙ୍କର ଜଣେ ସମ୍ପର୍କୀୟ ଭାଇ ପୁରୁଷୋତ୍ତମ ମଙ୍ଗରାଜ ପୁରୀରେ ଅବସ୍ଥାନ କରୁଥିଲେ । ଉଭୟ ରାଜାଙ୍କ ମଧ୍ୟରେ ସୁସମ୍ପର୍କ ଆଣିବା ପାଇଁ ପୁରୁଷୋତ୍ତମ ମଙ୍ଗରାଜ ମଧ୍ୟସ୍ଥତା କରିବେ ବୋଲି ଏକ ଜାଲି ଚିଠି ବନମାଳୀ ନରେନ୍ଦ୍ରଙ୍କ ନିକଟକୁ ପଠାଗଲା । ପୁରୁଷୋତ୍ତମ ମଙ୍ଗରାଜ ଚିଠି ପଠାଇଥିବା ଦର୍ଶାଯାଇଥିବାରୁ ସେ ମହାରାଣୀଙ୍କ ଷଡ଼ଯନ୍ତ୍ର ବୁଝିପାରିଲେ ନାହିଁ । ଏଣେ ସେ ଅନେକ ଦିନ ଧରି ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ନଥିଲେ । ଫଳରେ ସେ ପୁରୀ ଚାଲିଆସି ପ୍ରଥମେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଗଲେ । ସେ ଜଗନ୍ନାଥ ମନ୍ଦିରର ଅରୁଣ ସ୍ତମ୍ଭ ନିକଟରେ ସ୍ତୁତିକରି ଏକ ଶ୍ଳୋକ ପାଠ କରୁଥିବା ଅବସ୍ଥାରେ ପାଟ ମହାଦେଈ ଘାତକ ପଠାଇ ତାଙ୍କୁ ନିହତ କରିଥିଲେ । ପାଟ ମହାଦେଈଙ୍କ ଚକ୍ରାନ୍ତରେ ଶ୍ରୀମନ୍ଦିର ମଧ୍ୟରେ ଏଭଳି ହତ୍ୟାକାଣ୍ଡ ଘଟିଥିବାରୁ ଗଜପତି ଦୁଃଖିତ ହୋଇଥିଲେ ବୋଲି ଶୁଣିବାକୁ ମିଳେ । ସେ ଯେଉଁ ଶ୍ଳୋକ ପାଠ କରୁଥିବା ଅବସ୍ଥାରେ ନିହତ ହେଲେ ତାହା ହେଲା—

"ପ୍ରାତଃ ସ୍ମରାମି ଭଜତାଂ ଅଭୟଂ କରନ୍ତଂ ପ୍ରାକ୍
ସବଜନ୍ମକୃତ ପାପଭୟା ପହତ୍ୟୈ ।
ଯୋଗ୍ରାହଃ ବକ୍ତ୍ରପତିତାଙ୍ଘ୍ରିଂ ଗଜେନ୍ଦ୍ରଃ ଘୋର
ଶୋକଃ ପ୍ରଣସ୍ୟ ମକରୋଦ୍ଧୃତ ଶଙ୍ଖଶହ୍ନାଃ

ରାଜା ବନମାଳୀ ଆଉ ଆଜି ନାହାନ୍ତି । କିନ୍ତୁ ତାଙ୍କର କଳାକୀର୍ତ୍ତି ଯୁଗ ଯୁଗ ଧରି ତାଙ୍କୁ ସ୍ମରଣ କରାଉଥିବ । ଶାଶ୍ୱତ କଳା ପାଇଁ ସେ ଚିରଦିନ ଅମର ରହିବେ ।

# ନାରାୟଣ ସିଂହ ନରେନ୍ଦ୍ର ମହାପାତ୍ର
## ଖ୍ରୀ ୧୭୭୫ – ୧୭୯୧

ବନମାଳୀ ନରେନ୍ଦ୍ର ପୁଷ୍ପ ଶ୍ରୀମନ୍ଦିରରେ ନିହତ ହେବା ପରେ ଓଡ଼ିଶା ଗଜପତି ରଣପୁର ଆକ୍ରମଣ କରି ରାଜ୍ୟ ଅଧିକାର କଲେ । ଏହି ଘଟଣାରେ ମ୍ରିୟମାଣ ହୋଇ ଯୁବରାଜ ନାରାୟଣ ସିଂହ ରାଜମାତା ଓ କେତେକ ବିଶ୍ୱସ୍ତ ଅନୁଚରଙ୍କ ସହ ବ୍ୟାଘ୍ର ସଙ୍କୁଳ ନିବିଡ଼ ଅରଣ୍ୟ ଶଙ୍ଖଯୋଡ଼ି ମାଳରେ ଆତ୍ମ-ଗୋପନ କଲେ । ଏହାପରେ ଦୀର୍ଘ ସାତବର୍ଷ ଧରି ରଣପୁରରେ ଚାଲିଲା ଅବିରତ ଭାବେ ଲୁଣ୍ଠନ ଓ ଅତ୍ୟାଚାର । ରଣପୁର ପ୍ରଜାଙ୍କୁ ସହ୍ୟ କରିବାକୁ ପଡ଼ିଲା ଅଶେଷ ନିର୍ଯ୍ୟାତନା । ଗଜପତିଙ୍କ ସୈନ୍ୟ ସାମନ୍ତ ବହୁ ଚେଷ୍ଟା କରି ମଧ୍ୟ ରଣପୁରର ପ୍ରଜାମାନଙ୍କୁ ଦମନ କରି ପାରିନଥିଲେ । ଏଣେ ସାନଗଡ଼ର ଦଳ-ବେହେରା ଧନୁର୍ଦ୍ଧର ରାଉ ଗ୍ରାମକୁ ଗ୍ରାମ ଯାଇ ପ୍ରଜାମାନଙ୍କୁ ଗଜପତିଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଉଥିଲେ । ସମୟେ ସମୟେ ଖଣ୍ଡଯୁଦ୍ଧ ଲାଗିଥିଲା । ଫଳରେ ଗଜପତିଙ୍କ ସୈନ୍ୟ ସାମନ୍ତ ରଣପୁର ପ୍ରଜାଙ୍କୁ ଆୟତ୍ତାଧୀନ କରିବା କଷ୍ଟସାଧ୍ୟ ହୋଇ ପଡ଼ିଲା । ଗଜପତିଙ୍କ ପ୍ରତିନିଧି ଓ ସୈନ୍ୟ ସାମନ୍ତ ରଣପୁର ନିକଟବର୍ତ୍ତୀ ବଳନଗର ଗ୍ରାମରେ ଅବସ୍ଥାନ କରୁଥିଲେ । ଦୀର୍ଘ ସାତବର୍ଷ ଧରି ରାଜ୍ୟରେ ବିଦ୍ରୋହ ଲାଗି ରହିଥିଲା ।

ରଣପୁର ରାଜବଂଶାବଳୀରୁ ଜଣାପଡ଼େ ଯେ ନାରାୟଣ ନରେନ୍ଦ୍ର ଗଡ଼ଠାରୁ ଦୀର୍ଘ ୨୦ କି.ମି: ଦୂର ଶଙ୍ଖଯୋଡ଼ି ମାଳର ଉକୁଟିକୁମ୍ଭୀ ନାମକ ଏକ କନ୍ଧ ପଲ୍ଲୀରେ ଆତ୍ମଗୋପନ କଲେ । ସେଠାରେ ଅବସ୍ଥାନ କରି ସ୍ଥାନୀୟ କନ୍ଧ ମାନଙ୍କୁ ରଣ କୌଶଳ ଶିକ୍ଷା ଦେଲେ ଓ ସେମାନଙ୍କ ସହ ମିଳାମିଶି ଗଲେ । ମଝିରେ ମଝିରେ କନ୍ଧ ସୈନ୍ୟଙ୍କ ସହ ଗଜପତିଙ୍କ ସୈନ୍ୟ ଶିବିରକୁ ଅତର୍କିତ ଆକ୍ରମଣ କରୁଥିଲେ । ଏହିପରି ସାତବର୍ଷ ଅତିବାହିତ ହୋଇଗଲା ।

ଦିନେ ଯୁବରାଜ ନାରାୟଣ ଏକାକୀ ଭ୍ରମଣ କରୁ କରୁ ଶଙ୍ଖଯୋଡ଼ିର ଘନ ଅରଣ୍ୟ ମଧ୍ୟରେ ଥିବା ଗଙ୍ଗେଶ୍ୱର ଶିବ ମନ୍ଦିର ନିକଟରେ ପଦାର୍ପଣ କଲେ । ଉକ୍ତ ମନ୍ଦିରଠାରେ ବାଣପୁର ବାଂଝିଳା ଶାସନ ନିବାସୀ ତାନ୍ତ୍ରିକ ପଣ୍ଡିତ ଦାମୋଦର ଷଡ଼ଙ୍ଗୀ ପୂଜା ପାଠ କରୁଥିଲେ । ସେ ନାରାୟଣ ନରେନ୍ଦ୍ରଙ୍କୁ ଅବଲୋକନ କରି ତାଙ୍କ ପରିଚୟ ବୁଝିଥିଲେ । ଫଳରେ ସେ

ତାଙ୍କ ପରାମର୍ଶ ପ୍ରଦାନ କରି କଉଳ ପରିସ୍ଥିତିରେ ସେ ନିକଟସ୍ଥ ଉଲୁଚିକୁମ୍ପୀ ଗ୍ରାମରେ ଲୁଚି ରହିଛନ୍ତି ତାହା ବର୍ଣ୍ଣନା କଲେ ।

ଏହାପରେ ତାନ୍ତ୍ରିକ ଦାମୋଦର ଷଡଙ୍ଗୀ ପରାମର୍ଶ ଦେଲେ ଯଦି ଘନ ଅରଣ୍ୟାନୀ ମଧ୍ୟରେ, ପର୍ବତ ଶିଖରରେ, ଶ୍ମଶାନ ଭୂମିରେ, ଗୋଗୋଷ୍ଠ ମଧ୍ୟରେ କମ୍ବା ବିଲ୍ୱବନ ମଧ୍ୟରୁ ଯେ କୌଣସି ଏକ ସ୍ଥାନରେ ବିରାଜମାନ କରୁଥିବା ଶିବ କମ୍ବା ଶିବାଙ୍କ ପୀଠରେ ତନ୍ତ୍ର ମନ୍ତ୍ର ଆଦି କର୍ମ ଓ ପୂଜାପାଠ କରାଯାଏ, ତେବେ ତାଙ୍କର ଅଭିଳାଷ ପୂର୍ଣ୍ଣ ହେବ । ସେଠାର ରଥାଁଳା ଗ୍ରାମ ଅତି ନିକଟ । ରଥାଁଳାର ଘନ ଅରଣ୍ୟାନୀ ମଧ୍ୟରେ ଦେବୀ ଖିଲମୁଣ୍ଡାଙ୍କ ଆସ୍ଥାନ । ସେ ଜଣେ ପ୍ରତ୍ୟକ୍ଷା ଦେବୀ । ତାଂକ ନିକଟରେ ପୂଜାପାଠ କରି ତାଙ୍କର ଆଶ୍ରିତ ହେଲେ ସେ ରାଜ୍ୟ ଫେରି ପାଇବେ ବୋଲି ସେଠାରେ ଉପସ୍ଥିତ ଥିବା ଲୋକମାନେ ପରାମର୍ଶ ଦେଲେ । ସ୍ଥାନୀୟ କନ୍ଧମାନେ ଦେବୀଂକ ମହିମା ପ୍ରକାଶ କରିବାକୁ ଯାଇ କହିଲେ ବ୍ୟାଘ୍ର ଆକ୍ରମଣ କରିବାକୁ ଆସିବା ସମୟରେ ଦେବୀ ଖିଲମୁଣ୍ଡାଙ୍କ ନାମ ସ୍ମରଣ କରିବା ମାତ୍ରକେ ବ୍ୟାଘ୍ରର ପାଟି ପଡିଯାଏ ଓ ସେ ତୁରନ୍ତ ଫେରିଯାଏ ।

ତାନ୍ତ୍ରିକ ଦାମୋଦର ଷଡଙ୍ଗୀ ତନେଦିନ ଧରି ଦେବୀ ଖିଲମୁଣ୍ଡାଙ୍କ ପୀଠରେ ମନ୍ତ୍ର ପାଠ କରିବା ପରେ ଦେବୀ ପ୍ରସନ୍ନ ହେଲେ ଓ ରାଜାଙ୍କୁ ସ୍ୱପ୍ନାଦେଶ ଦେଲେ ସେ ଯେଉଁଦିନ ଏକ ଅଲୌକିକ ଘଟଣା ଦେଖିବେ ସେହି ଦିନଠାରୁ ତାଂକର ସୌଭାଗ୍ୟ ଫେରିଆସିଲା ବୋଲି ଜାଣିବେ ।

ତନ୍ତ୍ର ପାଠର କିଛିଦିନ ପରେ ଦିନେ ରାଜା ପ୍ରାତଃକାଳରୁ ଏକ କୁରୁମ ଗଛ ମୂଳେ ବସି ଦନ୍ତମର୍ଦ୍ଦନ କରୁଥିବା ସମୟରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଦେଖିଲେ । ଗୋଟିଏ ହନୁମାଂକଡ ଏକ ଶାଳ ବୃକ୍ଷରୁ ଦୂରବର୍ତ୍ତୀ ଅନ୍ୟ ଏକ ଶାଳବୃକ୍ଷକୁ ଲମ୍ପ ପ୍ରଦାନ କଲା । କିନ୍ତୁ ମାଂକଡଟି ଦୁଇ ବୃକ୍ଷର ବ୍ୟବଧାନର ଅଧା ପର୍ଯ୍ୟନ୍ତ ଯାଇ ଶୂନ୍ୟରୁ ହୁଂକାର ଦେଇ ପୁନର୍ବାର ମୂଳ ଗଛକୁ ଫେରି ଆସିଲା । ଏପରି ଏକ ଅଲୌକିକ ଘଟଣା ଦେଖି ରାଜା ବିସ୍ମୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ୱରାଜ୍ୟକୁ ଫେରିଯିବା ପାଇଁ ପ୍ରେରଣା ପାଇଲେ ବୋଲି ବିଶ୍ବାସ କଲେ ।

ଏହାପରେ ନାରାୟଣ ନରେନ୍ଦ୍ର ସ୍ଥାନୀୟ କନ୍ଧମାନଙ୍କୁ ଧରି ରଣପୁର ଗଡ ଅଭିମୁଖେ ଅଗ୍ରସର ହେଲେ । ତତ୍କାଳୀନ ରଣପୁର ଗଡର ପଶ୍ଚିମ ଓ

ଦକ୍ଷିଣ ପାର୍ଶ୍ୱରେ ଯଥାକ୍ରମେ ମଣିନାଗ ପର୍ବତ ଓ ଭୀଷଣ ଅରଣ୍ୟ ଥିଲା । ଓଡିଶା ରାଜାଙ୍କ ସୈନ୍ୟମାନେ ଗଡର ପୂର୍ବ ଓ ଉତ୍ତର ପାର୍ଶ୍ୱରେ ରହୁଥିଲେ ଏବଂ ଗଜପତି ସମୟେ ସମୟେ ନିକଟସ୍ଥ ରାଜନଗର ଗ୍ରାମରେ ଅବସ୍ଥାନ କରୁଥିଲେ । ନାରାୟଣ ନରେନ୍ଦ୍ର କନ୍ଧ ପାଇକ ମାନଙ୍କୁ ଧରି ପ୍ରଥମେ ମଣିନାଗ ପାହାଡର ଲଖବନ୍ଧ ପଥର ଉପରୁ ତୋପ ଫୁଟାଇଥିଲେ । କଥିତ ଅଛି ଦେବୀ ଖିଲମୁଣ୍ଡୀଙ୍କ ଆଶୀର୍ବାଦ ଯୋଗୁଁ ଏହି ତୋପରେ ଗୁଳ ପ୍ରାୟ ୭ କି:ମି: ଦୂର ପର୍ଯ୍ୟନ୍ତ ଯାଇ ସିକୋ ନିକଟବର୍ତ୍ତୀ ଏକ ପ୍ରକାଣ୍ଡ ବରଗଛରେ ବାଜିଥିଲା । ଏହି ବରଗଛ ମୂଳେ ଓଡିଶା ରାଜାଙ୍କ ପାଇକମାନେ ଶିବିର ପକାଇ ଅବସ୍ଥାନ କରିଥିଲେ । ତୋପ ମାଡରେ ବରଗଛର ଡାଳ ଛିଣ୍ଡି ପଡିବାରୁ ସେମାନଙ୍କ ମଧ୍ୟରୁ ଅନେକ ହତାହତ ହେଲେ । ଏଥିରେ ନାରାୟଣ ନରେନ୍ଦ୍ରଙ୍କ ସୈନ୍ୟ ମାନେ ଦକ୍ଷିଣ ପାର୍ଶ୍ୱରେ ଥିବା ଆଡବନ୍ଧ ପୁଷ୍କରିଣୀ ନିକଟରେ ଥିବା ଗଡଦ୍ୱାର ଭାଙ୍ଗି ଗଡମଧ୍ୟକୁ ପ୍ରବେଶ କଲେ । ସେମାନଙ୍କ ଶର ଓ ବର୍ଚ୍ଛା ଆକ୍ରମଣରେ ଓଡିଶା ରାଜାଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ଦେଇ ପଳାୟନ କଲେ । ମଲ୍ଲଗୁଣୀ କୂଳ ମୁଣ୍ଡେଇ ଚୋଟାଠାରେ ଯୁଦ୍ଧ ହୋଇଥିଲା । ଖିଲମୁଣ୍ଡୀଙ୍କ ମାୟାରେ ଘନ କୁହୁଡି ଘୋଟିଗଲା । ଓଡିଶା ପାଇକମାନଙ୍କୁ ସବୁ ଅନ୍ଧାର ଦେଖାଗଲା । ଅଥଚ ରଣପୁର ରାଜାଙ୍କ ମୁଷ୍ଟିମେୟ କନ୍ଧ ସୈନ୍ୟମାନଙ୍କୁ ସବୁ ସ୍ପଷ୍ଟ ଦେଖାଗଲା । ଏଣୁ ନାରାୟଣ ନରେନ୍ଦ୍ର ଜୟଯୁକ୍ତ ହୋଇପାରିଲେ ।

ନାରାୟଣ ନରେନ୍ଦ୍ର ପ୍ରଥମେ ଆଡବନ୍ଧ ଦ୍ୱାର ଜୟ କରିଥିବାରୁ ତାହାର ନାମ "ଜୟମଙ୍ଗଳ ଦ୍ୱାର" ଦେଇଥିଲେ । ଏଦ୍ୱାର ନିକଟବର୍ତ୍ତୀ ସାହିର ନାମ "ଜୟମଙ୍ଗଳ ସାହି" ରଖାଇଥିଲେ । କବିଙ୍କ ଭାଷାରେ –

"ଆଡବନ୍ଧ ବାଡ ଭାଙ୍ଗିବାର ଠାଣ<br>ଏ ଜୟମଙ୍ଗଳ ସାହି ତା' ପ୍ରମାଣ ।"

ଯୁଦ୍ଧପରେ ନାରାୟଣ ନରେନ୍ଦ୍ର ରଣପୁର ଗଡ଼ ଫେରି ପାରିଲେ । କିନ୍ତୁ ପୂର୍ବରୁ ତାଙ୍କ ରାଜ୍ୟ ଅନ୍ତର୍ଭୁକ୍ତ ଥିବା ଚମ୍ପାଗଡ଼, ମୟୂରଝାଲିଆ, ସିକୋ, ଗଡ଼ବାଣୀକିଲ, କପିଳେଶ୍ୱରପୁର (ଗଡ଼ ମାଣିକ), କଣ୍ଡର, ବାଙ୍କୋଇ, କୋଟଗଡ଼ ଓ କାସନ୍ଦା ପ୍ରଭୃତି ଓଡିଶା ରାଜ୍ୟରେ ରହିଥିଲା । ସେହିଭଳି ନାରାୟଣ ନରେନ୍ଦ୍ର ମାଳାଞ୍ଚଳରେ ଆତ୍ମଗୋପନ କରିଥିବା ସମୟରେ ନୟାଗଡ଼ ରାଜା ମାନଧାତା ରଣପୁର ରାଜ୍ୟର ଶରଣକୁଳ, କେନ୍ଦୁ ଡିହ ଓ

ଖଡିଆ ଅଞ୍ଚଳ ନିଜ ରାଜ୍ୟରେ ମିଶ୍ରଣ କରାଇଥିଲେ । ପରେ ଏହା ପୁନର୍ବାର ଘଟଣା ହୋଇ ପାରିନଥିଲା । ଫଳରେ ତତ୍କାଳୀନ ରଣପୁର ରାଜ୍ୟ ସ୍ବଚ୍ଛନ୍ଦରୁ ସଙ୍କୁଚିତ ହୋଇ କେବଳ ନୟାଗଡ଼, ପଠିଆ, ଶଙ୍ଖଯୋଡ଼, ଗୋପାଳପୁର, ରଣପୁର ଗଡ଼, କଙ୍କିଆ ଓ ବାଉଁଶ ଗଡ଼ ମଧ୍ୟରେ ସୀମିତ ଥିଲା । ନାରାୟଣ ନରେନ୍ଦ୍ରଙ୍କୁ ରାଜ୍ୟ ଜୟ କରିବାରେ ମାଳ କରଡାପଲ୍ଲୀ, ଭେଟବର, କଳା ମାଟିଆ ଓ ଗୁଣ୍ଡୁରିବାଡ଼ ଗ୍ରାମର ପାଇକ ତଥା ଶଙ୍ଖଯୋଡ଼ ମାଳର କନ୍ଧମାନେ ସାହାଯ୍ୟ କରିଥିଲେ । ସେ ସେମାନଙ୍କର ଦଳପତିମାନଙ୍କୁ ଶାଢ଼ୀ ପ୍ରଦାନ କରିଥିଲେ ।

ନାରାୟଣ ନରେନ୍ଦ୍ରଙ୍କ ମାଳାଞ୍ଚଳରେ ଆତ୍ମଗୋପନ ସମୟରେ ଗଜପତି ଦିବ୍ୟସିଂହ ଦେବଙ୍କ ପାଇକମାନେ ରଣପୁର ଗଡ଼ ଜଗନ୍ନାଥ ମନ୍ଦିର ସମ୍ମୁଖରେ ଥିବା ସିଂହମୂର୍ତ୍ତି ନେବା ପାଇଁ ଉଦ୍ୟମ କରିଥିଲେ । ଶୁଣିବାକୁ ମିଳେ ଜଗନ୍ନାଥ ମହାପ୍ରଭୁ ଗଜପତିଙ୍କୁ ସ୍ୱପ୍ନାଦେଶ ଦେଲେ ଯେ ସେ ପୁରୀରେ ରହିବା ସଙ୍ଗେ ସଙ୍ଗେ ତାଙ୍କର ଷୋହଳ କଳାରୁ ଏକ କଳା ରଣପୁରରେ ଅଛି । ଏଣୁ ସେ ସିଂହମୂର୍ତ୍ତି ଦ୍ୱୟ ଏଠାରୁ ନଅନ୍ତୁ ନାହିଁ । ଏହା ପରେ ଗଜପତି ରଣପୁର ଆସି ଜଗନ୍ନାଥ ମନ୍ଦିରରେ ଦେବପିଠା ସରପୁଳି ଭୋଗ ଖାଇଥିଲେ । ଗଜପତିଙ୍କ ଦରବାରରେ ବନମାଳୀ ନରେନ୍ଦ୍ରଙ୍କ ସମୟ ପର୍ଯ୍ୟନ୍ତ ରଣପୁର ରାଜଗାଦି ପ୍ରଧାନ ସାମନ୍ତରୂପେ ସ୍ୱୀକୃତ ହୋଇ ଆସୁଥିଲା । କିନ୍ତୁ ନାରାୟଣ ନରେନ୍ଦ୍ରଙ୍କ ସମୟରୁ ନୟାଗଡ଼ ରାଜା ମାନଧାତାଙ୍କର ପ୍ରଧାନ ସାମନ୍ତ ପଦ ପ୍ରାପ୍ତି ହୋଇଥିଲା ।

ନାରାୟଣ ନରେନ୍ଦ୍ରଙ୍କ ରଣପୁର ଗଡ଼ ଅଧିକାର ପରେ ଓଡ଼ିଶାର ଗଜପତି ଦିବ୍ୟସିଂହ ଦେବ ମନେକଲେ କୌଣସି ଦେବୀଙ୍କ ଅନୁଗ୍ରହରୁ ଏହି ବିଜୟ ଘଟିଛି । ସେ ଖିଲମୁଣ୍ଡାଙ୍କ ପରିବର୍ତ୍ତେ ମଣିନାଗ ଦୁର୍ଗାଙ୍କ ସହାୟତାରୁ ବିଜୟ ଘଟିଥିବା ଅନୁମାନ କଲେ । ଏଣୁ ମଣିନାଗ ଦୁର୍ଗାଙ୍କୁ ନେଇଯିବାକୁ ଆଣିବାକୁ ମନସ୍ଥ କରି ବାଣପୁରର ଜନୈକ ତାନ୍ତ୍ରିକ ବ୍ରାହ୍ମଣଙ୍କୁ ପଠାଇଲେ । ସେ କେତେକ ଅନୁଚରଙ୍କୁ ସାଙ୍ଗରେ ନେଇ ମଣିନାଗ ପର୍ବତର ଶିଖର ଦେଶରେ ପ୍ରତିଷ୍ଠା ହୋଇଥିବା ~~ଜୟଦୁର୍ଗା ମୂର୍ତ୍ତିଙ୍କୁ~~ ରାତ୍ରକାଳରେ ନେଇଯାଇ ଆଣିଲେ ।

କଥିତ ଅଛି ଏହି ମୂର୍ତ୍ତି ଚୋରାଇ ଆଣିବା ସମୟରେ ଦେବୀଙ୍କ ସନ୍ତୋଷ ନିମିତ୍ତ ପଥ ମଧ୍ୟରେ ଅସଂଖ୍ୟ ଛେଳି ବୋଦା ଓ ମେଣ୍ଢା ବୋଦା ବଳି ଦିଆଯାଇଥିଲା । ଦୁର୍ଗା ମୂର୍ତ୍ତିଙ୍କୁ ଅଠର ବର୍ଷ କାଳ ଗୋପନରେ ରଖିବା ପରେ ସନ୍ତୋବାଘା ନିକଟସ୍ଥ ଝାର ରାମଚନ୍ଦ୍ରପୁର ଶାସନରେ ପ୍ରତିଷ୍ଠା କରାଯାଇଥିଲା । ଅଦ୍ୟାପି ଉକ୍ତ ମୂର୍ତ୍ତି ସେଠାରେ ପୂଜା ପାଉଛନ୍ତି । ନାରାୟଣ ନରେନ୍ଦ୍ର ରାଜ୍ୟ ଫେରି ପାଇବା ପରେ ମଣିନାଗ ମୂର୍ତ୍ତି ଚୋରି ଯାଇଥିବାରୁ ସାମୁକା ସାହି ମହାପାତ୍ରଙ୍କ ଘରୁ ଅନ୍ୟ ଏକ ଦୁର୍ଗାମୂର୍ତ୍ତି ଆଣି ମନ୍ଦିରରେ ପ୍ରତିଷ୍ଠା କରାଇଥିଲେ ।

ଖିଲମୁଣ୍ଡାଙ୍କ ଆଶୀର୍ବାଦରୁ ରଣପୁର ରାଜା ରାଜ୍ୟ ଫେରି ପାଇଥିବାରୁ ଦଶହରା ପର୍ବ ଉପଲକ୍ଷେ ଦେବୀଙ୍କୁ ଷୋହଳ ଦିନ ପାଇଁ ରାଜ ନଅରକୁ ନିମନ୍ତ୍ରଣ ହୋଇଥାଏ । ଏହି ବିଧିବିଧାନ ନାରାୟଣ ନରେନ୍ଦ୍ରଙ୍କ ସମୟରୁ ଅଦ୍ୟାବଧି ପ୍ରଚଳିତ ଅଛି । ଦେବୀ ଖିଲମୁଣ୍ଡା ଆଶ୍ୱିନ ମାସର ଦ୍ୱିତୀୟା ତିଥି ଦିନ ରାଜପ୍ରାସାଦକୁ ନିମନ୍ତ୍ରିତ ହୁଅନ୍ତି । ଉକ୍ତ ଦିନ ରାଜା ନିଷ୍ଠାର ସହ ଉପବାସ ରହି ଦେବୀଙ୍କ ଆଗମନକୁ ପ୍ରତୀକ୍ଷା କରନ୍ତି । ଦେବୀଙ୍କୁ ନିମନ୍ତ୍ରଣ କରିବାକୁ ଯେଉଁମାନେ ଯାଇଥା'ନ୍ତି ସେମାନେ ସାଥିରେ ଚାଉଳ, ଡାଲି ଓ ଚନେ ପରିବା ଆଦି ଖାଦ୍ୟ ସାମଗ୍ରୀ ନେଇଥାନ୍ତି । ତାହା ଏକତ୍ର ରନ୍ଧନ ହୋଇ ଦେବୀଙ୍କୁ ପ୍ରସାଦ ରୂପେ ସମର୍ପଣ ହୁଏ ଏବଂ ସାଥିରେ ଯାଇଥିବା ଲୋକମାନେ ଉକ୍ତ ପ୍ରସାଦ ଲାଭ କରନ୍ତି ।

ଦେବୀ ଖିଲମୁଣ୍ଡା କାଳସୀଠାରେ ଉଭା ହୋଇ ରାଜ ଉଆସକୁ ପୁଅ ବୋହୂ ରୂପରେ କି ବୁଢ଼ାବୁଢ଼ୀ ରୂପରେ ଯିବେ ତାହା ପ୍ରକାଶ କରିଥାନ୍ତି । ଖିଲମୁଣ୍ଡା ମନ୍ଦିରରେ ଥିବା ଚାରିମୂର୍ତ୍ତିଙ୍କୁ ବୁଢ଼ା, ବୁଢ଼ୀ, ପୁଅ ଓ ବୋହୂ ବୋଲି ସ୍ୱୀକାର କରାଯାଏ । ପ୍ରଚଳିତ ଜନମତ ଅନୁସାରେ ଯେଉଁବର୍ଷ ବୁଢ଼ାବୁଢ଼ୀ ଆଶ୍ୱିନ ମାସର ତୃତୀୟା ତିଥିରେ (ଦୁତି ବାହାନ ତିଥି) ଆଗମନ କରନ୍ତି, ସେହିବର୍ଷ ଯଥେଷ୍ଟ ପରିମାଣରେ ବୃଷ୍ଟିପାତ ହୋଇଥାଏ । ଉତ୍ତମ ବୃଷ୍ଟି ଯୋଗୁଁ ରାଜ୍ୟ ଧନଧାନ୍ୟରେ ପରିପୂର୍ଣ୍ଣ ହୁଏ ଓ ପ୍ରଜାମାନେ ସୁଖଶାନ୍ତିରେ ବାସ କରନ୍ତି । କିନ୍ତୁ ଯେଉଁବର୍ଷ ଦେବୀ ଖିଲମୁଣ୍ଡା ପୁଅବୋହୂ ରୂପରେ ଆସନ୍ତି ଉକ୍ତ ବର୍ଷ ଅନାବୃଷ୍ଟି, ଦୁର୍ଭିକ୍ଷ ଆଦି ଘଟେ ଓ ରାଜ୍ୟରେ ଅଶାନ୍ତି ଲାଗିରହେ । ଦେବୀ କାଠି ବିଗ୍ରହରେ ରାଜନଅରକୁ ଆଗମନ କରନ୍ତି । ଷୋହଳ ହାତ ଲମ୍ବର ବାଉଁଶ ଦଣ୍ଡରେ ଠାକୁରାଣୀଙ୍କ ଆଙ୍କମାଳ ଅଣାଯାଏ । ରାଆଁଳାଠାରୁ ରଣପୁର ପ୍ରାୟ ୨୩ କିଲୋମିଟର । ଏହି ରାସ୍ତାରେ ଯେତେ ଗ୍ରାମ ପଡ଼େ, ଗ୍ରାମବାସୀମାନେ ଠାକୁରାଣୀଙ୍କର ପୂଜା ଅର୍ଚ୍ଚନା କରନ୍ତି ।

ଦେବୀ ଖିଲମୁଣ୍ଡାଙ୍କ ପାଇଁ ଶଙ୍ଖପୋଡ଼ ମାଳର ନିବିଡ଼ ଅରଣ୍ୟ ମଧ୍ୟରେ ଥିବା ସାତ ଆଠଟି କନ୍ଧ ପରିବାର ବିଶିଷ୍ଟ ରାଆଁଳା ଗ୍ରାମଟି ପ୍ରସିଦ୍ଧ ଲାଭ କରିଛି । ଏହି ଗ୍ରାମର ଚତୁଃପାଖେ ଘେରି ରହିଛି ସୁଉଚ୍ଚ ପର୍ବତଶ୍ରେଣୀ, ଶାଳ, ପିଆଶାଳ, ଶିଶୁ, ଅସନ, କୁସୁମ ଓ ମହୁଲ ଗଛର ନିବିଡ଼ ଅରଣ୍ୟ । ଏହାର ପାଦଦେଶରେ ଲମ୍ବି ଯାଇଛି ଇନ୍ଦ୍ରାବତୀ ନାମରେ ଏକ ଗିରି ଝରଣା । ଦେବୀଙ୍କ ପୀଠରେ ନିବିଡ଼ ବୃକ୍ଷରାଜିରେ ଶାନ୍ତ ରମଣୀୟ ଶୋଭା ଦର୍ଶକ ପ୍ରାଣକୁ ଆକୃଷ୍ଟ କରିଥାଏ । ବିଭିନ୍ନ ପକ୍ଷୀଙ୍କ କାକଳି କୂଜିତ ବନଭୂମି ମଧ୍ୟରେ ମନୁଷ୍ୟର ସ୍ୱର କ୍ୱଚିତ ଶୁଣିବାକୁ ମିଳିଥାଏ । ଏହି ଅଞ୍ଚଳରେ ଅଦ୍ୟାବଧି ଅନେକ ବ୍ୟାଘ୍ର ଦେଖିବାକୁ ମିଳେ ।

ଖିଲମୁଣ୍ଡା ଏକ ଖିଲ ବା କିଳା ଆକାରରେ ପୂଜା ପାଉଛନ୍ତି । ସେଥିପାଇଁ ଦେବୀଙ୍କର ନାମକରଣ ଏପରି ହୋଇଛି । ମାଳାଞ୍ଚଳରେ ପ୍ରତ୍ୟେକ ଗ୍ରାମରେ ଖିଲମୁଣ୍ଡାଙ୍କ ଆଜ୍ଞାମାଳ ନେଇ ଖିଲମୁଣ୍ଡା ଠାକୁରାଣୀ ପ୍ରତିଷ୍ଠା କରା ଯାଇଛି । ଏପରିକି ରଣପୁରର ସମତଳ ଅଞ୍ଚଳରେ ମଧ୍ୟ ଖିଲମୁଣ୍ଡା ଠାକୁରାଣୀ ପ୍ରତିଷ୍ଠା ହୋଇ ପୂଜା ପାଉଛନ୍ତି । ସେଥିମଧ୍ୟରୁ ଅଡ଼ାଲ ଓ ସାରଙ୍ଗଧରପୁର ଗ୍ରାମବାସୀମାନଙ୍କ ପ୍ରଚେଷ୍ଟାରେ କୋଇଲମା ପାହାଡ଼ର ପାଦଦେଶରେ ପ୍ରତିଷ୍ଠା ଲାଭ କରିଥିବା ଖିଲମୁଣ୍ଡା ଠାକୁରାଣୀ ଅନ୍ୟତମ ।

ବିଭିନ୍ନ ଉତ୍ସବ ମାନଙ୍କରେ ଠାକୁରାଣୀଙ୍କର କାଠି ବିଗ୍ରହକୁ ଗ୍ରାମକୁ ଅଣାଯାଏ । ଢ଼ୋଲ, ମହୁରି, ଘଣ୍ଟ ଓ ଶିଙ୍ଗାର ଅପୂର୍ବ ଝଙ୍କାର ମଧ୍ୟରେ କାଠିଆ (କାଠ ବିଗ୍ରହକୁ ଧରିଥିବା ଲୋକମାନେ) ମାନଙ୍କର ଉଦ୍ଦାମ ନୃତ୍ୟର ତାଳେ ତାଳେ ଠାକୁରାଣୀ ବିଗ୍ରହ ମଧ୍ୟରେ ପ୍ରବେଶ କରି ଭକ୍ତ ଓ ଦର୍ଶକ ମାନଙ୍କୁ ମୁଗ୍ଧ କରନ୍ତି । ଚିଲିକାର ନାଉରୀ ଯେପରି ଚିଲିକା ଭିତରକୁ ଯିବା ପୂର୍ବରୁ କାଳିଯାଇଙ୍କ ନାମ ସ୍ମରଣ କରେ ସେପରି ରଣପୁର ମାଳାଞ୍ଚଳର ଆଦିବାସୀମାନେ ଖିଲମୁଣ୍ଡାଙ୍କ ନାମ ସ୍ମରଣ କରି ଜଙ୍ଗଲ ମଧ୍ୟକୁ ନିର୍ଭୟରେ ପ୍ରବେଶ କରିଥାନ୍ତି ।

## ୧୦୩ କୃପାସିନ୍ଧୁ ସିଂହ ନରେନ୍ଦ୍ର ମହାପାତ୍ର-ଖ୍ରୀ୧୭୯୧-୧୭୯୨

ନାରାୟଣ ନରେନ୍ଦ୍ରଙ୍କ ପୁତ୍ର କୃପାସିନ୍ଧୁ ନରେନ୍ଦ୍ର ଅଠର ବର୍ଷ ବୟସରେ ରାଜତ୍ୱ କଲେ । ତାଙ୍କର ଯୁବରାଣୀ ସାମୁକା ଡାହିଠାରେ ଏକ କୂପ ଖୋଳାଇ ଥିଲେ । ସେ ମାତ୍ର ଦେଢ଼ବର୍ଷ ରାଜତ୍ୱ କରିଥିଲେ । ନାରାୟଣ ନରେନ୍ଦ୍ରଙ୍କ କନିଷ୍ଠ ଭ୍ରାତାର ପୁତ୍ର ରାମଚନ୍ଦ୍ର ସିଂହ 'ବେଣୁଧର' ନାମକ ଏକ ବରଗଛ ମୂଳେ ରାଜା କୃପାସିନ୍ଧୁ ନରେନ୍ଦ୍ରଙ୍କୁ ନିହତକଲେ ବୋଲି ଜନଶ୍ରୁତି ରହିଛି ।

# ତୃତୀୟ ଅଧ୍ୟାୟ

## ରାମଚନ୍ଦ୍ର ନରେନ୍ଦ୍ର ମହାପାତ୍ର
### ଖ୍ରୀ ୧୬୯୨ – ୧୭୨୭

କୃପାସିନ୍ଧୁ ନରେନ୍ଦ୍ରଙ୍କୁ ହତ୍ୟାକରି ରାମଚନ୍ଦ୍ର ନରେନ୍ଦ୍ର ରଣପୁର ରାଜ ସିଂହାସନ ଅଳଂକୃତ କରିଥିଲେ । ସେ ଖୁବ୍ ସାହାସୀ ଓ ଯୋଦ୍ଧାଥିଲେ । ନାରାୟଣ ନରେନ୍ଦ୍ରଙ୍କ ସମୟରୁ ରଣପୁରର ବହୁ ଅଞ୍ଚଳ ଖୋର୍ଦ୍ଧା ଓ ନୟାଗଡ଼ ରାଜ୍ୟରେ ଚ୍ଛଲି ଯାଇଥିଲା । ସେ ନିଜ ଅପହୃତ ରାଜ୍ୟ ଫେରି ପାଇବା ପାଇଁ ଖୋର୍ଦ୍ଧା ରାଜାଙ୍କ ସହ ଯୁଦ୍ଧ କରିଥିଲେ । ଏଥିରେ ବହୁ ଧନ ଜୀବନ କ୍ଷୟ ହୋଇଥିଲା । ବଙ୍ଗ ମୁସଲମାନ ସୈନ୍ୟଙ୍କ ଆକ୍ରମଣରେ ଖୋର୍ଦ୍ଧା ଗଜପତି ଦୁର୍ବଳ ହେବାର ସୁଯୋଗ ନେଇ ରାମଚନ୍ଦ୍ର ନରେନ୍ଦ୍ର ଚମ୍ପାଗଡ଼, ମୟୂରଝାଳିଆ ସିକୋ, ଗଡ଼ବାଣିକିଲୋ, କୋଟଗଡ଼ ଓ କାସନ୍ଦା ପ୍ରଭୃତି ଗଡ଼ମାନ ଜୟ କରିଥିଲେ । କିନ୍ତୁ ପୂର୍ବରୁ ନିଜ ରାଜ୍ୟ ଅନ୍ତର୍ଭୁକ୍ତ ଥିବା କଡ଼ବ, କପିଳେଶ୍ବର-ପୁର, ବାଙ୍କୋଇ, ରୋଡ଼ଙ୍ଗ, ଖଣ୍ଡିଆ ଓ ଶରଣକୂଳ ଜୟ କରି ପାରି ନଥିଲେ । ରାମଚନ୍ଦ୍ର ନରେନ୍ଦ୍ରଙ୍କ ରାଜ୍ୟ ଜୟ ପରେ ଖୋର୍ଦ୍ଧା ଗଜପତିଙ୍କ ବକ୍ସି ସିକୋ ଗଡ଼କୁ ଛାଡ଼ି ଦେବାପାଇଁ ଅନୁରୋଧ ଜଣାଇଥିଲେ । ଫଳରେ ରାମଚନ୍ଦ୍ର ନରେନ୍ଦ୍ର ସିକୋ ଗଡ଼କୁ ଛାଡ଼ି ଦେଇଥିଲେ ।

ରାମଚନ୍ଦ୍ର ନରେନ୍ଦ୍ରଙ୍କ ସମୟରେ ବଙ୍ଗଳାର ମୁସଲମାନ ସୈନ୍ୟମାନେ ସେନାପତି ଏକାମ୍ର ଖାଁ, ରହିମ୍ ଖାଁ ଓ ଶୋଭା ସିଂହଙ୍କ ନେତୃତ୍ବରେ ଓଡ଼ିଶା ଆକ୍ରମଣ କରିଥିଲେ । ସେତେବେଳେ ଓଡ଼ିଶା କହିଲେ ଖୋର୍ଦ୍ଧା ରାଜ୍ୟକୁ ବୁଝାଉଥାଏ । କାରଣ ଖୋର୍ଦ୍ଧା ଥିଲା ଓଡ଼ିଶାର ରାଜଧାନୀ । ଏହି ଆକ୍ରମଣ ଯୋଗୁଁ ବହୁ ହିନ୍ଦୁ ଆତଙ୍କିତ ହୋଇ ରଣପୁର ରାଜ୍ୟରେ ଆଶ୍ରୟ ନେଇଥିଲେ ।

**କଙ୍କାଳୀ ଠାକୁରାଣୀ**— ସାନ ପଦର ଗ୍ରାମ ନିକଟରେ ବନ୍ଧ୍ୟଗିରି ତଳେ ପୂର୍ବରୁ ବନମାଳୀ ନରେନ୍ଦ୍ରଙ୍କର ଏକ ଦୁର୍ଗ ଥିଲା । ରାଜା ବନମାଳୀ ନରେନ୍ଦ୍ରଙ୍କ ମୃତ୍ୟୁ ପରେ ଏହା ଖୋର୍ଦ୍ଧା ରାଜାଙ୍କ ଅଧୀନକୁ ଚ୍ଛଲି ଆସିଥିଲା । ଏହି ଦୁର୍ଗର ଭଗ୍ନାବଶେଷ ମାଟିତଳେ ପୋତିହୋଇ ରହିଛି । ଏହି ସ୍ଥାନକୁ 'ବେଗୁନିଆ ଥଳି' ବୋଲି କୁହାଯାଉଛି । ଏହି ସ୍ଥାନରୁ ମାଟି ଖୋଳିଲେ ବିଭିନ୍ନ ଧାତୁ ମୂର୍ତ୍ତି

ି ପାତମାନ ଦେଖିବାକୁ ମିଳୁଛି । ଏହା ଭଗ୍ନଚଣ୍ଡୀ ବାଭଟରେ ଦୃଷ୍ଟିକୁ ଅଦ୍ୟାବଧି ଆସି ପାରିନାହିଁ । ଉକ୍ତ ଦୁର୍ଗରେ କଙ୍କାଳୀ ଠାକୁରାଣୀ ପୂର୍ବେ ପୂଜା ପାଉଥିଲେ । ଦୁର୍ଗ ତଳେ ଚନ୍ଦ୍ରପୋଖରୀ ଅବସ୍ଥିତ ।

ରାଜା ରାମଚନ୍ଦ୍ର ନରେନ୍ଦ୍ର ଏହି ଠାକୁରାଣୀଙ୍କୁ ନିଜ ନଅରକୁ ଆଣିବାକୁ ଚାହିଁଥିଲେ । ସେଥିପାଇଁ ଲୁହା ତିଆରି ଏକ ଶଗଡ଼ରେ ଠାକୁରାଣୀ କଙ୍କାଳୀଙ୍କୁ(ଏକ ବିରାଟ ପଥର ଉପରେ ମୂର୍ତ୍ତି ଖୋଦିତ) ନେଇ ଯାଉଥିଲେ । କିନ୍ତୁ ରଣପୁର ଓ ଓଡ଼ିଶା ରାଜ୍ୟର ସୀମା ବଢିପାଟଣା ଗ୍ରାମର ପୋଖରୀ କୂଳରେ ଶଗଡ ଭାଙ୍ଗି ଅଚଳ ହୋଇଗଲା । ରାଜା ଯୋଗ ଧ୍ୟାନରେ ବସି ଆରାଧନା କଲେ । ଠାକୁରାଣୀ ତାଙ୍କୁ ସ୍ୱପ୍ନାଦେଶ ଦେଲେ ଯେ ସେ ତାଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇଛନ୍ତି କିନ୍ତୁ ସେ ସ୍ଥାନୀୟ ଭକ୍ତମାନଙ୍କୁ ଦନ୍ଦୋଗ କରି ରଣପୁର ଯାଇପାରିବେ ନାହିଁ । ସେ ଶଗଡ ଭାଙ୍ଗିଥିବା ସ୍ଥାନରେ ରହିବେ ଓ ପ୍ରତ୍ୟେକ ବର୍ଷ ଦଶହରା ପର୍ବ ସପ୍ତମୀ ଦିନ ସାନପଦର ଗଡଦ୍ୱାର ବୃନ୍ଦାବତୀ ପୀଠକୁ ଆସି ଅନ୍ୟ ଦୁଇ ଦେବୀ ବୃନ୍ଦାବତୀ ଓ କନକ ଦୁର୍ଗାଙ୍କ ସହ ମିଶି ତିନିଦିନ ଭୋଗ ପାଇବେ ଏବଂ ତା'ପରେ ଫେରିଯିବେ । ତେଣୁ ରାଜା ପୋଖରୀ କୂଳରେ ଏକ ମନ୍ଦିର ନିର୍ମାଣ କରି ସେହିଠାରେ ପ୍ରତିଦିନ ଦର୍ଶନ କରି ଯାଆନ୍ତି ।

ଦେବୀ କଙ୍କାଳୀ ରଣପୁର ମାଳାଞ୍ଚଳର ଦେବୀ ଛିନ୍ନମସ୍ତାଙ୍କ ଭଳି କାଠି ବିଗ୍ରହରେ ବିଜେ ହୋଇ ଆସନ୍ତି ଦଶହରା ସପ୍ତମୀ ଦିନ ସାନପଦର ଗ୍ରାମକୁ । ସେଠାରେ ତିନି ଠାକୁରାଣୀଙ୍କର ପୂଜାବିଧି ସହ ଏକ ବଡ଼ ମେଳା ହୁଏ । ଏହି ଉତ୍ସବରେ ବଢିପାଟଣା, ରାଯୋଳ ଓ ସାନପଦର ଗ୍ରାମର ଅଧିବାସୀ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି ।

ରାମଚନ୍ଦ୍ର ନରେନ୍ଦ୍ର ପର୍ବ ପୂଜା ପାଇଁ ମଣିନାଗଙ୍କର ଏକ ବଡ଼ ଦୁର୍ଗା ମୂର୍ତ୍ତି ନିର୍ମାଣ କରାଇଥିଲେ । ସେ ପୁଣି ଶ୍ରୀ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ବାସୁଦିଆ ଗ୍ରାମକୁ ରାଘବ ଦାସ ମଠର ମହନ୍ତଙ୍କୁ ଖଞ୍ଜିଥିଲେ । ସେ କଙ୍କିଆ ଗ୍ରାମକୁ ବନ୍ଦାଣ ଗ୍ରାମରୂପେ ଘୋଷଣା କରିଥିଲେ । କାରଣ ଏହି ଗ୍ରାମର ପ୍ରଜାମାନେ ସର୍ବପ୍ରଥମେ ରାଜାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ଖୋର୍ଦ୍ଧା ରାଜାଙ୍କ ସହ ଲାଗିଥିବା ଯୁଦ୍ଧରେ ଯୋଗଦାନ କରିଥିଲେ । ସେ ରାମଚନ୍ଦ୍ରପୁର ଶାସନର ବ୍ରାହ୍ମଣମାନଙ୍କୁ ଯଥେଷ୍ଟ ଭୂସମ୍ପତ୍ତି ନିଷ୍କରରୂପେ ଦାନ କରିଥିଲେ ।

ରାମଚନ୍ଦ୍ର ନରେନ୍ଦ୍ରଙ୍କ ପୂର୍ବରୁ ରାଜ ପ୍ରାସାଦ ମଣିନାଗ ପର୍ବତର ପାଦ ଦେଶରେ ଅବସ୍ଥିତ ଥିଲା । ସେଠାରେ ପ୍ରବଳ ରୌଦ୍ରତାପ ଅନୁଭୂତ ହେଉ ଥିବାରୁ ସ୍ଥାନ ପରିବର୍ତ୍ତନ କରି ଶ୍ରୀ ଜଗନ୍ନାଥ ମନ୍ଦିରର ଉତ୍ତର ପାର୍ଶ୍ୱରେ ନୂତନ ରାଜ ପ୍ରାସାଦ ନିର୍ମାଣ କରାଇଥିଲେ । ଏହା ଶେଙ୍କୁଟି ଚୂନ ପଥରରେ ନିର୍ମିତ ଏକ ମହଲ ଘର ଥିଲା । ବର୍ତ୍ତମାନର ରାଜପ୍ରାସାଦ ରାଜା ବେଣୁଧର ନରେନ୍ଦ୍ରଙ୍କ ସମୟରେ ନିର୍ମିତ ହୋଇଥିଲା ।

## ସାରଙ୍ଗଧର ବଜ୍ରଧର ନରେନ୍ଦ୍ର
## ସାରଙ୍ଗଧର ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର
### ଖ୍ରୀ ୧୭୨୭ ୧୭୫୪

ରାଜା ରାମଚନ୍ଦ୍ରଙ୍କ ପରେ ତାଙ୍କ ପୁତ୍ର ଶାରଙ୍ଗଧର ରାଜା ହୋଇଥିଲେ । ସେ ଖୁବ୍ ଦୀର୍ଘକାୟ ଓ ବଳିଷ୍ଠ ଥିଲେ । ତାଙ୍କ ଶରୀରରୁ ଜ୍ୟୋତି ପ୍ରକଟିତ ହେଉଥିଲା । ଯେ କୌଣସି ଲୋକ ତାଙ୍କୁ ଦେଖିବାମାତ୍ରେ ସ୍ୱତଃ ନତମସ୍ତକ ହୋଇ ପ୍ରଣାମ ଜଣାଉଥିଲା । ଏହି ଘଟଣା ଖୋର୍ଦ୍ଧାର ଗଜପତି ବୀରକିଶୋର ଦେବ ବାରମ୍ବାର ଶୁଣିବା ପରେ ମଧ୍ୟ ବିଶ୍ୱାସ କଲେ ନାହିଁ । ସେ ଏହାର ସତ୍ୟାସତ୍ୟ ଅନୁସନ୍ଧାନ ପାଇଁ ନିଜ ପୁରୋହିତଙ୍କୁ ରଣପୁର ପଠାଇଲେ । ସେ ରଣପୁର ଆସି ରାଜାଙ୍କୁ ସାକ୍ଷାତ୍ କଲେ । ସେ ସାରଙ୍ଗଧରଙ୍କ ବଳିଷ୍ଠ ଦୀର୍ଘକାୟ ତେଜସ୍ୱୀ ଶରୀର ଅବଲୋକନ କରି ମତ ଦେଲେ ଯେ ତାଙ୍କର ଦେବୋପମ ରୂପ ସନ୍ଦର୍ଶନରେ ପ୍ରତ୍ୟେକ ଲୋକ ମନରେ ତାଙ୍କ ପ୍ରତି ଭକ୍ତିଭାବ ଜାତ ହେବା ସ୍ୱାଭାବିକ । ଏହା ଫଳରେ ଗଜପତି ମହାରାଜା ରଣପୁର ରାଜା ସାରଙ୍ଗଧର ନରେନ୍ଦ୍ରଙ୍କୁ "ବଜ୍ରଧର" ଉପାଧି ପ୍ରଦାନ କରିବା ସଙ୍ଗେ ସଙ୍ଗେ ପାଞ୍ଚଗୋଟି ଅଶ୍ୱ ପ୍ରଦାନ କରିଥିଲେ । ଅନ୍ୟ ଏକ ଘଟଣାରେ ଶାରଙ୍ଗଧରଙ୍କ ବୀରତ୍ୱରେ ମୁଗ୍ଧ ହୋଇ ମରହଟ୍ଟା ସୁବେଦାର ଦୁଇଗୋଟି ହସ୍ତୀ ଉପହାର ଦେଇଥିଲେ । S. S. R. R. E. ର ୬୮ ପୃଷ୍ଠାରେ ପ୍ରକାଶ ପାଉଛି ଯେ, "Raja Sarangadhar was so very powerful that a man may fall down at his sight. To examine this fact the Maharaja of Orissa sent his priest and found it true. So he being very much pleased with his valour offered him the title of Bajradhar and 5 horses.

ରାଜା ଶାରଙ୍ଗଧରଙ୍କ ଶୌର୍ଯ୍ୟ ବୀର୍ଯ୍ୟ ସମ୍ପର୍କରେ ଶ୍ଳୋକରେ ନିମ୍ନମତେ ବର୍ଣ୍ଣନା ହୋଇଛି –

“ଯ ସ୍ୱର୍ଣ୍ଣାକ୍ଷରେ ମୁଦ୍ରିତ ମହୋ ! ମହାଗୁଣାଳଙ୍କୃତଂ ସଦା ।
ଗର୍ଗ ବଂଶୋଦ୍ଭବଂ ରଣପୁରାଧୀଶୋ ରାଜୋହୁସାରମଣିଃ ॥
ଯୋ ବିଶ୍ରବ ହୃନୋଃ ଦର୍ପଦଳନେ ଚଦ୍ରୁ ସୁକ୍ଷାବୋଦ୍ଧୂଣେ ।
ତସ୍ମୃତୋ ଶାରଙ୍ଗୋ ନାମ୍ନାଃପ୍ରିଧ୍ରୀଯୁତେ ଶକ୍ର୍ୟାକୁର୍ଳାଶୋ ପମଃ ॥
ଯସ୍ୟ ଶୌର୍ଯ୍ୟ ପ୍ରକ୍ତିଂ ସନ୍ଦର୍ଶନେ ଜନାଃ ନତାଃଇଭଦନ୍ତେ ଭୂବି ।
ନନ୍ଦିକ୍ଷାଦ୍ୱ ଗଜପତିଃ ନୃପରାଜୋ ପ୍ରେଷିତୋ ବସ୍ତ୍ରମେକମ୍ ॥
ଗୁମ୍ଫୃଶ୍ରବତଯୁ ପ୍ରେକ୍ଷିତୋଭୂସୁରଃ ସାକ୍ଷାଦ୍ରୁର୍ଯ୍ୟା ମଣ୍ଡଳଃ ।
ତତ୍ପୂରଂ ପଦବୀ ଲବ୍ଧା ଶାର୍ଙ୍ଗଧର ବଜ୍ରୋ ବିଖ୍ୟାତୋହ୍ଭନେ ॥”

ରାଜା ଶାରଙ୍ଗଧର ବଜ୍ରଧର ବିଷ୍ଣୁଭକ୍ତ ଥିଲେ । ସେ ରଣପୁର ମଣିନାଗ ଠାକୁରାଣୀଙ୍କ ଦଣ୍ଡହର ପର୍ବରେ ହେଉଥିବା ପଶୁବଳୀ ଲୋପକରି ଶ୍ରୀ ଜଗନ୍ନାଥଙ୍କ ମହାପ୍ରସାଦ ଭୋଗ ହେବାର ବ୍ୟବସ୍ଥା କରିଥିଲେ । ସେ ରଣପୁର ଜଗନ୍ନାଥ ମନ୍ଦିରରୁ ମାଧବ ମୂର୍ତ୍ତି ନେଇ ଚମ୍ପାଗଡ଼ରେ ସ୍ଥାପନ କରିଥିଲେ । ଏହି ମାଧବ ମୂର୍ତ୍ତି ଗଜପତି ପ୍ରତାପରୁଦ୍ର ଦେବ ରଣପୁର ରାଜା ଉଦ୍ଧବ ନରେନ୍ଦ୍ରଙ୍କୁ ପ୍ରଦାନ କରିଥିଲେ । ସେ ରଣପୁର ଜଗନ୍ନାଥ ମନ୍ଦିରରେ ୩½ ହାତ ଉଚ୍ଚତା ବିଶିଷ୍ଟ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ନିର୍ମାଣ କରି ସ୍ଥାପନ କରିଥିଲେ । ପୂର୍ବରୁ ରଣପୁରରେ ରଥଯାତ୍ରା ହେଉନଥିଲା । ସେ ତିନିଗୋଟି ରଥ ନିର୍ମାଣ କରି ରଥଯାତ୍ରା ଆରମ୍ଭ କରିଥିଲେ । ତାଙ୍କ ସମୟରୁ ରଣପୁରରେ ରଥଯାତ୍ରା ପାଳିତ ହୋଇ ଆସୁଅଛି ।

ଗଜପତି ବୀରକେଶରୀ ଦେବଙ୍କ ଅଣତ୍ରିଶ ଅଙ୍କେ ପ୍ରବଳ ବାତ୍ୟା ହେବାରୁ ପୁରୀ ଶ୍ରୀମନ୍ଦିର ନୀଳଚକ୍ର ଉପୁଡ଼ି ପଡି ବେଢ଼ା ମଧ୍ୟରେ ପଡିଥିଲା । ଏହି ବାତ୍ୟା ସହ ବଜ୍ରପାତ ଘଟି ରଣପୁର ମଣିନାଗ ମନ୍ଦିରରେ ଫାଟ ସୃଷ୍ଟି ହୋଇଥିଲା । ରାଜା ଶାରଙ୍ଗଧର ଏହାର ମରାମତି କରାଇଥିଲେ । ସେ ରଣପୁର ବାଲିଗା ମଠରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ପ୍ରତିମୂର୍ତ୍ତି ଦାରୁରେ ନିର୍ମାଣ କରି ପୂଜାପୂଜାର ବିଧାନ କରିଥିଲେ । ଏହାଙ୍କ ରାଜତ୍ୱ କାଳରେ ସାକ୍ଷୀଗୋପାଳ ଠାକୁର ରଣପୁର ବିଜେ କରିଥିଲେ । ସେ ଗୋପାଳପୁର ଠାରେ ଏକ ମଣ୍ଡପ ନିର୍ମାଣ କରି ଠାକୁରଙ୍କର ସେଠାରେ ପୂଜାବିଧି ପାଳନ କରାଇଥିଲେ ।

ତାଙ୍କ ସମୟରେ ରଣପୁର ସହିତ ନୟାଗଡ ରାଜ୍ୟର ଯୁଦ୍ଧ ହୋଇଥିଲା । ସେ ଏହି ଯୁଦ୍ଧରେ ନୟାଗଡର ଶରଣକୂଳ ଜୟକରି ସେଠାରେ ଥିବା ଅଷ୍ଟଭୁଜା ଦୁର୍ଗାମୂର୍ତ୍ତି ରଣପୁର ଆଣିଥିଲେ । ଏହାପରେ ନୟାଗଡ ରାଜା ମୃତ୍ୟୁଞ୍ଜୟ ସିଂହ ମାନଧାତା ରଣପୁରର ଜନୈକ ସାମନ୍ତ ନଳାଦ୍ରି ରାଉତରାୟଙ୍କ ମଧ୍ୟସ୍ଥତାରେ ରାଜା ସାରଙ୍ଗଧରଙ୍କ ସହ ସନ୍ଧିକରି ବହିହଜାର ଟଙ୍କା ପ୍ରଦାନ କରିଥିଲେ । ଫଳରେ ରାଜା ଶାରଙ୍ଗଧର ନୟାଗଡକୁ ଶରଣକୂଳ ଅଞ୍ଚଳ ଛାଡି ଦେଇଥିଲେ ।

ଶାରଙ୍ଗଧର ବଜ୍ରଧର ନରେନ୍ଦ୍ର ଘୁମୁସର ରାଜକନ୍ୟାଙ୍କ ପାଣିଗ୍ରହଣ କରିଥିଲେ ଓ ନିଜ କନ୍ୟାକୁ ହିନ୍ଦୋଳ ରାଜାଙ୍କ ସହ ବିବାହ ଦେଇଥିଲେ । ତାଙ୍କ ସମୟରେ ପଟିଆ ରାଜ୍ୟରେ ପ୍ରଜାମେଳି ହୋଇଥିଲା । ଫଳରେ ପଟିଆ ରାଜା ରଣପୁରରେ ଆଶ୍ରୟ ନେଇଥିଲେ । ସେ ନିଜ ୨ୟ କନ୍ୟାକୁ ରାଜାଙ୍କ ସହ ବିବାହ ଦେଇ ତାଙ୍କୁ ପଟିଆ ରାଜଗାଦିରେ ବସାଇବାର ବ୍ୟବସ୍ଥା କରିଥିଲେ ।

ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ଏଥିପୂର୍ବରୁ ଦେବା ମନ୍ଦିରମାନଙ୍କରେ ଘଟୁଥିବା ପଶୁବଳି ପ୍ରଥା ଲୋପ କରିଥିଲେ । କେବଳ ମଣିନାଗ ଦୁର୍ଗାଙ୍କର ଦଶହରା ପର୍ବ ଉପଲକ୍ଷେ ଗୋଟିଏ ମାତ୍ର ପଶୁବଳି ଦେବାର ବ୍ୟବସ୍ଥା ରଖିଥିଲେ । ସେ ରାମଚନ୍ଦ୍ର ସିଦ୍ଧ ବ୍ରହ୍ମଚାରୀଙ୍କଠାରୁ ଶିକ୍ଷା ଗ୍ରହଣ କରି ବୈଷ୍ଣବ ଧର୍ମର ମହିମା ଗାନ କରିଥିଲେ । ସେ ଶିକ୍ଷା ଗ୍ରହଣ କରି ଗୁରୁଙ୍କୁ ପ୍ରଦାନ କରିଥିବା ଦକ୍ଷିଣା ସମ୍ବନ୍ଧରେ ମିଳିଥିବା ତାମ୍ର ଫଳକର ଅବିକଳ ନକଲ ନିମ୍ନରେ ପ୍ରଦାନ କଲି ।

"ଶ୍ରୀ ରାଧାକାନ୍ତ ଶରଣଃ ଶ୍ରୀ ଗୁରୁ ସିଦ୍ଧ ବ୍ରହ୍ମଚାରୀ ଗୋସାଇଁ ମହାପ୍ରଭୁଙ୍କୁ ଶାରଙ୍ଗଧର ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କର ନତ୍ୟ ସହସ୍ର ସହସ୍ର ଦଣ୍ଡ ପରଣାମ । ଶ୍ରୀ ବୀର କେଶରୀ ଦେବ ମହୀରାଜାଙ୍କ ସମସ୍ତ ୪ଅଙ୍କ ମକର ୧୫ ଦିନେ ପୌଷ ପୂର୍ଣ୍ଣମୀ ଶୌଖ୍ୟବାସରେ ପୁଷ୍ୟା ନକ୍ଷତ୍ରେ କର୍କଡା ଚନ୍ଦ୍ରରେ ଗ୍ରହଣ ସମୟରେ ଶ୍ରୀ ଭୃଷ୍ଣାୟା ଦେବଙ୍କ ଦେଉଳ ଭିତରେ ଶ୍ରୀ ଗୋସାଇଁ ମହାପ୍ରଭୁଙ୍କ ଠାରୁ ହରିନାମ ଗ୍ରହଣ କରି ଏ ଦକ୍ଷିଣାକୁ ଆମ୍ଭ ରାଜ୍ୟ ରଣପୁର ସୀମାରୁ ପାଟବେରଣା ଗ୍ରାମରୁ ଦଳ ଝଞ୍ଜା ସମ୍ବନ୍ଧରୁ ଏ ଦେଶ ରହଣି ଲକ୍ଷ୍ମଣ ପ୍ରଧାନ ମୋଟ ସମ୍ବନ୍ଧରୁ ଭୂମି ବା୪।୧୬ ଗୃହଶ ପଞ୍ଚାଅଣି କହାଣେ,

କଉନୁଆଗଡରୁ ୧୦ମାଣ ୩୦ କାହାଣ, ପୁରୁଣାବସ୍ତ ଯିଚରୁ ଛମାଣ ଅଟରେ ଗୁଣ୍ଠ ଭିନ ପଦକାକୁ ଅଠେଇଶ କାହାଣ ଦୁଇପଣ, ଚ.ଟବେରଣା ଗ୍ରାମରୁ ଡହ ବ୭୫୪ ଖଗ ଦୁଇଟା ଜଗୁ ଗଉଡର ସମ୍ବନ୍ଧ ଆମ୍ବତୋଟା ଏକ ଗୋଷ୍ଠା ଅଣି ଗଛ ମଧ ଦେଲୁଁ । ଏ ଭୂମିରେ ଗଛ ମାଛ ପଦର କଙ୍କାଳ ଜଳ ସ୍ଥଳ ନାଧି ନଖାତ କାଷ୍ଟ ପାଷାଣ ଗୁପ୍ତୋପଗ୍ରାପ୍ୟ ଜଳଦଣ୍ଡା ସମେତ ଏ ଡହରେ ରହିବା ପରଜାଙ୍କ ଜାତ ଉପଜାତ ମଢ଼ ମୁଆଳ ପାଚ ପରଦାବ ଡଣ୍ଡ ଉପଡଣ୍ଡ ଛଟର ବାକି ସମସ୍ତ ଆମ୍ଭ ସାମାନ୍ତେ ଯାବତ ଚନ୍ଦ୍ରାର୍କେ ଭୁଞ୍ଜାନ୍ତକେ ଦକ୍ଷିଣା ମୂଳକର ଦେଲୁଁ । ଶ୍ରୀ ଗୋସାଇଁ ମହାପ୍ରଭୁଙ୍କ ଶିଷ୍ୟ ଶାଖା ଅନୁକ୍ରମେ ଆମ୍ଭ ପୁରୁଡାନୁ-କ୍ରମେ ଏହିରୂପେ ହରିନାମ ଗ୍ରହଣ କରୁଥିବୁଁ । ଏଥିରେ ଯେ ଅନ୍ୟଥା କରିବ ସେ ଗୁରୁଦ୍ୱାରେ ଅପରାଧ ପାଇବ । ଏଥକୁ ଶ୍ରୀ ବାସୁଦେବ ସ୍ୱାକ୍ଷଃ ଅଷ୍ଟଲୋକ-ପାଳ ଧର୍ମ ସ୍ୱାକ୍ଷଃ । ଶ୍ରୀ ଗୋସାଇଁ ମହାପ୍ରଭୁଙ୍କ କଲ୍ୟାଣରେ ଆମ୍ଭର ଯେତେ ଗଡ ଅଧିକ ହେଉଥିବ ଏ ଗଡ ଗୋଟିକେ ୧୦୦ କାହାଣେ ଲେଖାଁଏ ଦେଉଥିବୁଁ । ଏ ଶାରଙ୍ଗଧର ସିଂ ବଜ୍ରଧର ନରେନ୍ଦ୍ର ମହାପାତ୍ରର ସମ୍ମତଃ ।”

ସେ ଶାରଙ୍ଗଧରପୁର ଶାସନ ପ୍ରତିଷ୍ଠା କରାଇ ବ୍ରାହ୍ମଣମାନଙ୍କୁ ନିଷ୍କର ଭୂମିବାଡ ପ୍ରଦାନ କରିଥିଲେ । ସେ ଜଣେ ଦାନଶୀଳ, ତେଜସ୍ୱୀ ଓ ସତ୍ତ୍ୱବନ୍ତ ରାଜା ଥିଲେ । ଫଳରେ ଓଡିଶାର ବିଭିନ୍ନ ଅଞ୍ଚଳରୁ ବହୁ କବି, ପଣ୍ଡିତ ଓ ବିଦ୍ୱାନ ବ୍ରାହ୍ମଣମାନେ ତାଙ୍କ ଦରବାରକୁ ଆସି ପୁରସ୍କୃତ ହେଉଥିଲେ ।

ରାଜା ଶାରଙ୍ଗଧରଙ୍କ ସମୟରେ ବଙ୍ଗ ମୁସଲମାନ ସୈନ୍ୟଙ୍କ ଆକ୍ରମଣ ଭୟରେ ଖୋର୍ଦ୍ଧା ଗଜପତି ମହାରାଜା ଦିବ୍ୟସିଂହ ଦେବ (୨ୟ) ବାଣପୁରରେ ଆତ୍ମଗୋପନ କରିଥିଲେ । ସେ ବାଣପୁର ଯିବା ପଥରେ ରଣପୁର ରାଜ୍ୟ ଚମ୍ପାଗଡରେ କିଛିଦିନ ଅବସ୍ଥାନ କରିଥିଲେ । ଏହା ୧୭୭୦ ରୁ ୧୭୭୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଘଟିଥିଲା । ଏହି ଆତ୍ମଗୋପନ ସମୟରେ ରଣପୁର ରାଜା ଗଜପତି ମହାରାଜାଙ୍କୁ ସମସ୍ତ ସହଯୋଗ ଓ ସାହାଯ୍ୟ ପ୍ରଦାନ କରିଥିଲେ ।

ଢେଙ୍କାନାଳ ରାଜ୍ୟର ଟିକାୟତ ଶ୍ରୀ ସନାତନ ଦେଓ ଭ୍ରମରବର ରାୟ ରଣପୁର ରାଜ୍ୟର ସାନଗଡଠାରେ ଦୀର୍ଘଦିନ ଧରି ଆଶ୍ରୟ ନେଇଥିଲେ । ଢେଙ୍କାନାଳ ରାଜ ପରିବାରରେ ଲାଗିଥିବା କଳହର ଅବସାନ ପରେ ସେ ନିଜ ରାଜ୍ୟକୁ ଫେରି ଯାଇଥିଲେ ।

ରାଜା ଶାରଙ୍ଗଧର ଯୁବରାଜ ନୃସିଂହଙ୍କୁ କୁଜଙ୍ଗ ରାଜ କନ୍ୟାଙ୍କ ସହ ବିବାହ କରାଇଥିଲେ ।

# ନୃସିଂହ ବଜ୍ରଧର ନରେନ୍ଦ୍ର

## ଶ୍ରୀ ନୃସିଂହ ସିଂହ ବଜ୍ରଧର ନରେନ୍ଦ୍ର ଖ୍ରୀ ୧୭୭୨—୧୭୯୯

ରାଜା ନୃସିଂହ ବଜ୍ରଧର ନରେନ୍ଦ୍ର ଖୁବ୍ ଶକ୍ତିଶାଳୀ ଓ ଯୁଦ୍ଧପ୍ରିୟ ରଜା ଥିଲେ । S.S.R.R.E. ର ୨୯ ପୃଷ୍ଠାରେ ଉଲ୍ଲେଖ ଅଛି - " Raja Nrusingh Bajradhar Narendra was stout strong and fond of war. He was very skillful in use of arms." ରାଜା ନୃସିଂହଙ୍କ ସମୟରେ ରଣପୁର ଓ ନୟାଗଡ଼ ରାଜ୍ୟ ମଧ୍ୟରେ ଯୁଦ୍ଧ ହୋଇଥିଲା । ତାଙ୍କର ଦୁଇଭାଇ ଶ୍ରୀ କମଳ ଲୋଚନ ଦେବେନ୍ଦ୍ର ସାମନ୍ତ ଓ ଶ୍ରୀଚନ୍ଦନ ସାମନ୍ତଙ୍କ ନେତୃତ୍ୱରେ ରଣପୁର ସୈନ୍ୟମାନେ କେନ୍ଦୁଡ଼ିପ ଓ ଖଣ୍ଡିଆ ଗଡ଼ ଅଧିକାର କରିଥିଲେ । ଫଳରେ ନୟାଗଡ଼ ରାଜା ମରହଟ୍ଟା ସୁବେଦାର ରାଜା ରାମ ପଣ୍ଡିତଙ୍କୁ ଟ୫,୫୦୦/- ଭେଟି ସ୍ୱରୂପ ଦେଇ ତାଙ୍କ ନିର୍ଦ୍ଦେଶରେ ରଣପୁର ରାଜାଙ୍କ ଠାରୁ କେନ୍ଦୁଡ଼ିପ ଓ ଖଣ୍ଡିଆ ଗଡ଼ ଫେରି ପାଇଥିଲେ ବୋଲି ଜଣାଯାଏ । ଏହା S.S.R.R.E. ର ୨୯ ପୃଷ୍ଠାରେ ନିମ୍ନମତେ ଉଲ୍ଲେଖ ଅଛି – " The Raja of Nayagarh fought with him but could not recover khatia and Kendudhip garhs. So he paid a sum of Rs. 5,500/- to the Marahatta Subedar Raja Ram Pandit and got back the two garhs."

ଏହାପରେ ନୟାଗଡ଼ ରାଜା ରଣପୁର ରାଜାଙ୍କ ଠାରୁ ରାଜ୍ୟର ସୀମା ଜାଣିବାକୁ ଚାହିଁଥିଲେ । ଏଥିପାଇଁ ଏକ ପାଞ୍ଜି ପଠାଯାଇଥିଲା । ପାଞ୍ଜି ସହ ଯେଉଁ ଶ୍ଲୋକ ରଚିତ ହୋଇ ପଠାଯାଇଥିଲା ତାହା ଏଥି ସହ ପ୍ରଦାନ କଲି ।

"ତପସ୍ୟା ମାସି ଶଶିତ୍ୟର୍କେ ପୁଷ୍ୟାଯୋଗେ ତିଥି ଦ୍ୱାଦଶଯୈ୍ତଦ୍ଙ୍କେ
ଶ୍ରୀ ମନ୍ନରେନ୍ଦ୍ରସ୍ୟ ନୃସିଂହନାମା ଶିରସ୍ୟ ବନ୍ଧାଶ୍ରିତ ମାତ ପଟ୍ଟଂ ।"

ଉକ୍ତ ପାଞ୍ଜି ଭଗବାନ ନାୟକ ପ୍ରସ୍ତୁତ କରିଥିଲେ ।

ଗଜପତି ଦିବ୍ୟସିଂହ ଦେବଙ୍କର ବଙ୍ଗ ନବାବ ସୈନ୍ୟଙ୍କ ସହ ଛାପଙ୍ଗ ଗଡଠାରେ ଯୁଦ୍ଧ ହୋଇଥିଲା । ଏଥିରେ ରଣପୁର ରାଜା ଅନେକ ସୈନ୍ୟ

ଟୋଇ ଯୁଦ୍ଧରେ ସାହାଯ୍ୟ କରିଥିଲେ ଏବଂ ଗଜପତି ମହାରାଣୀଙ୍କୁ ବିପତ୍ତିରୁ ରକ୍ଷା କରିଥିଲେ । ଏଥିରେ ଗଜପତି ଅତ୍ୟନ୍ତ ଖୁସି ହୋଇ ରାଜା ନୃସିଂହଙ୍କୁ ଶ୍ୱେତ ଛତ୍ର ଓ କାହାଳୀ ଉପହାର ଦେଇଥିଲେ । ଓଡ଼ିଶା ମୋଗଲ ଅଧୀନରୁ ମରହଟ୍ଟା ଅଧୀନକୁ ଆସିଥିଲେ ମଧ୍ୟ ସମୟେ ସମୟେ ବଙ୍ଗ ମୁସଲମାନଙ୍କ ପକ୍ଷରୁ ଆକ୍ରମଣ ହେଉଥିଲା ।

ରାଜା ନୃସିଂହ ନିଜ ନାମରେ ନୃସିଂହପୁର ଶାସନ ପ୍ରତିଷ୍ଠା କରିଥିଲେ । ସେ ଏହି ଶାସନର ଦାନାଧ୍ୟକ୍ଷ ବ୍ରାହ୍ମଣମାନଙ୍କୁ ନିଷ୍କର ବ୍ରହ୍ମୋତ୍ତର ଜମିବାଡ଼ି ବଣ୍ଟିଥିଲେ । ଏହି ଶାସନ ସମ୍ପ୍ରତି ରାଜସୁନାଖଳା ଗ୍ରାମର ଏକ ସାହିରୂପେ ପରିଚିତ ।

ଗଜପତି ଦିବ୍ୟସିଂହ ଦେବ (୨ୟ)ଙ୍କ ପନ୍ଦର ଅଙ୍କରେ ଦୁର୍ଭିକ୍ଷ ପଡ଼ିଥିଲା । ସେ ଅନ୍ନଛତ୍ର ଖୋଲି ହଜାର ହଜାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ଜୀବନରକ୍ଷା କରିଥିଲେ । ସେ ଗୁରୁଗୋଟି ବଳାସରୁ (ଭରଣ ଭରଣ ଧାନ ରହୁଥିବା ଅମାର ଘର) ପ୍ରଜାମାନଙ୍କୁ ବିନା ଅର୍ଥରେ ଧାନ ଯୋଗାଇଥିଲେ । ତାଙ୍କର ଏହି ବଦାନ୍ୟତା ଯୋଗୁଁ ପ୍ରଜାମାନଙ୍କ ଜୀବନରକ୍ଷା ହୋଇ ପାରିଥିଲା । ଏଣୁ ମରହଟ୍ଟା ସୁବେଦାର ରାଜା ରାମ ପଣ୍ଡିତ ତାଙ୍କର ଦାନଶୀଳତାରେ ମୁଗ୍ଧ ହୋଇ ତାଙ୍କୁ ଏକ ହସ୍ତୀ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ।

ରାଜା ନୃସିଂହ ଜଣେ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ମଣିନାଗ ସ୍ୱପ୍ନେଶ୍ୱର, ଦଣ୍ଡା ବାଲୁଙ୍କେଶ୍ୱର ଓ ହରିହରେଶ୍ୱର ମନ୍ଦିରରେ ଚୂନ ପ୍ରଲେପନର ବ୍ୟବସ୍ଥା କରିଥିଲେ । ସେ ରଣପୁର ଜଗନ୍ନାଥ ମନ୍ଦିର ସମ୍ମୁଖରେ ଏକ ଗରୁଡ଼ ସ୍ତମ୍ଭ ନିର୍ମାଣ କରାଇଥିଲେ । ପୂର୍ବରୁ ସେଠାରେ ଥିବା ଗରୁଡ଼ ସ୍ତମ୍ଭକୁ ଗୁଣ୍ଡିଚା ଘରକୁ ସ୍ଥାନାନ୍ତରିତ କରିଥିଲେ । ମଣିନାଗ ପର୍ବତ ଉପରେ ଥିବା ଚକାଶିଳା ପ୍ରସ୍ତରରେ ଛିଦ୍ର ହୋଇଥିଲା । ତାକୁ ଯତ୍ନ ସହକାରେ ଶିଳ୍ପୀ ତ୍ରିଲୋଚନ ମହାପାତ୍ର ମନ୍ଦିର ମଧ୍ୟରେ ସ୍ଥାପନ କରିଥିଲେ । ଏହା ଉପରେ ଶିଳ୍ପୀ ରଘୁ ମହାପାତ୍ରଙ୍କ ଦ୍ୱାରା ନିର୍ମିତ ନୂତନ ମଣିନାଗ ମୂର୍ତ୍ତି ପ୍ରତିଷ୍ଠା ହୋଇ ଥିଲା । ଏହି ମୂର୍ତ୍ତିର ପାଦପଦ୍ମରେ ରଚିତ ଶ୍ଳୋକ ପାଠକଙ୍କ ଅବଗତି ନିମନ୍ତେ ପ୍ରଦାନ କଲି ।

"ଶ୍ରୀ ଭୂବନାମା ଶ୍ରୀ ନୃସିଂହ ନରେନ୍ଦ୍ରଃ
ଗ୍ରହ ଗଗନ ନଗକ୍ଷ୍ମାମାନମିତେ ଶକାବ୍ଦେ
ସଦ୍ମଦପ୍ମମିଦ ରାଗାଦାସାନଂ ଦେନ ବିଷ୍ଣୋଃ
ରଘୁରସଭୂତ ଶିଳ୍ପୀ କଳ୍ପି ସୌପର୍ଣ୍ଣୀ ମୂର୍ତ୍ତିଃ ।।"

ସେ କୁଞ୍ଜ ବିହାରୀ, ବୃନ୍ଦାବନ ବିହାରୀ ଓ ଗଣେଶ ମୂର୍ତ୍ତି ନିର୍ମାଣ କରି ଶ୍ରୀ ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠା କରାଇଥିଲେ । ଶ୍ରୀ ଗଣେଶ ମୂର୍ତ୍ତିଙ୍କ ପାଦ ପଦ୍ମରେ ନିମ୍ନଲିଖିତ ଶ୍ଳୋକ ରଚିତ ହୋଇଛି ।

"ସମରପୁର ନରେନ୍ଦ୍ରଃ ଶ୍ରୀ ନୃସିଂହାଭିଜାନେ
ଜଗତି ବିମଳ କୀର୍ତ୍ତିଃ
ଶତ୍ରୁଘାତୀ ପ୍ରତାପଃ ନଗଲଭ ଭୃଷଚନ୍ଦ୍ରେ
ମାନବାପ୍ରେ ଶକାବ୍ଦେ
ଗଣପତି ନୃମେଷ୍ଟ ନିର୍ମିତାଂ ଶର୍ମଦାଜିଂ ।"
(ଶକାବ୍ଦେ-୧୭୦୮, ଖ୍ରୀଷ୍ଟାବ୍ଦ - ୧୭୮୬)

ତାଙ୍କ ସମୟରେ ଧାତୁ ନିର୍ମିତ ଏକ ହନୁମାନ ମୂର୍ତ୍ତି, ଦାରୁରେ ଶ୍ରୀ ଚୈତନ୍ୟ ଓ ଶ୍ରୀ ଗୋବିନ୍ଦ ମୂର୍ତ୍ତି ନିର୍ମିତ ହୋଇଥିଲା । ଏହି ମୂର୍ତ୍ତିଗୁଡିକ ରଣପୁର ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠା ହୋଇଥିଲା । ତାଙ୍କ ରାଣୀ ହୀରାମଣି ପାଟ ମହାଦେଈ ଏକ ଗୋପାଳ ମୂର୍ତ୍ତି ନିର୍ମାଣ କରି ମନ୍ଦିରରେ ପ୍ରତିଷ୍ଠା କରାଇଥିଲେ । ଶ୍ଳୋକରେ ଏହା ନିମ୍ନମତେ ପ୍ରକାଶ ପାଇଛି ।

" ଶ୍ରୀ ମନ୍ନୃସିଂହାଖ୍ୟ ନରେନ୍ଦ୍ର ପତ୍ନୀ
ସଦ୍ଭୂଷଣା ହୀରାମଣିରେଷ ସା
ତସ୍ମାନଗାମ୍ବୁଧିରଭୂ ଶକାବ୍ଦେ ଗୋପାଳ
ମୂର୍ତ୍ତିକଳ କାରତେଯ୍ୟଂ ।।"

ରାଜା ନୃସିଂହ ନରେନ୍ଦ୍ର ପିତା ଶାରଙ୍ଗଧରଙ୍କ ଭଳି ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ବହୁ ଦେବାଦେବୀଙ୍କ ପ୍ରତିମା ନିର୍ମାଣ ଓ ମନ୍ଦିର ମାନଙ୍କର ମରାମତି ତାଙ୍କ ଜୀବନର ଏକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ଥିଲା । ତାଙ୍କ ସମୟରେ ସାନପଦର ନିବାସୀ ବୈରାଗୀ ଚରଣ ପଟ୍ଟନାୟକ କଳା କଳେବର ଚଉତିଶା, ମନବୋଧ ଚଉତିଶା ଓ ମଥୁରା ମଙ୍ଗଳ ଆଦି ବହୁ ଅମୂଲ୍ୟ ପୁସ୍ତକ ରଚନା କରି ଜନପ୍ରିୟ ହୋଇଥିଲେ । ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଣେତା ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ସେ ରଣପୁର ରାଜ୍ୟର ସୁନାଖଳା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ପ୍ରକୃତରେ ସେ ସୁନାଖଳା ନିକଟବର୍ତ୍ତୀ ସାନପଦର ଗ୍ରାମର ଅଧିବାସୀ ଥିଲେ । କବି ବୈରାଗୀ ଚରଣ ପଟ୍ଟନାୟକ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ପରେ କବି ଭକ୍ତ ଚରଣ ଦାସ ରୂପେ

ପରିଚିତ ହୋଇଥିଲେ । ଭକ୍ତ ଚରଣ ପଦବ୍ରଜରେ ଭାରତର ବହୁତୀର୍ଥ ଭ୍ରମଣ କରିଥିବା ଜଣାଯାଏ । କଥିତ ଅଛି ଦଶପଲ୍ଲାର ରାଜା କୌଣସି କାରଣରୁ କବି ଭକ୍ତ ଚରଣଙ୍କ ପ୍ରତି କ୍ଷୁବ୍ଧ ହୋଇ ତାଙ୍କର ଇଷ୍ଟଦେବତା ବୃନ୍ଦାବନ ଚନ୍ଦ୍ରଙ୍କୁ ନଦୀଗର୍ଭରେ ଫିଙ୍ଗି ଦେଇଥିଲେ । ଫଳରେ ସେ ଅତି ଦୁଃଖିତ ମନରେ ନିଜ ଗ୍ରାମକୁ ଫେରି ଆସିଥିଲେ । ରାଜା ନୃସିଂହ ଏହା ଜାଣିବା ପରେ କବି ଭକ୍ତ ଚରଣଙ୍କୁ ସାଦର ଆମନ୍ତ୍ରଣ କରି ନିଜ ରାଜ୍ୟ ଅନ୍ତର୍ଗତ ସୁନାଖଳା ମଠରେ ଅବସ୍ଥାପିତ କରାଇଥିଲେ । ପରେ ଭକ୍ତ ଚରଣ ଦଶପଲ୍ଲା ଯାଇ ନଦୀ ଗର୍ଭରୁ ଇଷ୍ଟ ଦେବତାଙ୍କୁ ଉଦ୍ଧାର କରି ସୁନାଖଳା ମଠରେ ରଖି ପୂଜା ଅର୍ଚ୍ଚନା କରିଥିଲେ ।

ରାଜା ନୃସିଂହ ନରେନ୍ଦ୍ର କବି ଭକ୍ତ ଚରଣ ଦାସଙ୍କୁ ଆଦର ଅଭ୍ୟର୍ଥନା ଜଣାଇଥିଲେ । ତତ୍କାଳୀନ ପାଞ୍ଚଗଡ଼ର ସୁନାମଧନ୍ୟ କବି ଅନଙ୍ଗ ନରେନ୍ଦ୍ର ରଣପୁର ରାଜ ଦରବାରରେ ସମ୍ମାନିତ ହୋଇଥିଲେ । କବି ଅନଙ୍ଗ ନରେନ୍ଦ୍ର ରାମାୟଣ ରଚନା କରିଥିଲେ ଓ ତାଙ୍କ ଘର ବାଙ୍କୋଇ ଗଡରେ ଥିଲା । ଅନଙ୍ଗ ନରେନ୍ଦ୍ରଙ୍କ ରାମାୟଣ ଓଡ଼ିଶାରେ ସର୍ବତ୍ର ଆଦୃତ ହୋଇଥିଲା ।

ରାଜା ନୃସିଂହ ନରେନ୍ଦ୍ରଙ୍କ ତିନି ରାଣୀ ଥିଲେ । ପ୍ରଥମ ରାଣୀଙ୍କର ପାଞ୍ଚପୁଅ, ଦ୍ୱିତୀୟ ରାଣୀଙ୍କର ୪ପୁଅ ଓ ତୃତୀୟ ରାଣୀଙ୍କର ୩ପୁଅ ଜନ୍ମ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଦ୍ୱିତୀୟ ରାଣୀଙ୍କର ଜ୍ୟେଷ୍ଠସନ୍ତାନ ବୟସରେ ବଡ଼ ହୋଇଥିବାରୁ ତାଙ୍କ ଅନ୍ତେ ରାଜଗାଦି ପାଇଥିଲେ । ପ୍ରଥମ ରାଣୀଙ୍କ ପୁତ୍ରମାନେ ହେଲେ ଫକୀର •ରଘୁସିଂହ ସାମନ୍ତ, ଗୋପୀନାଥ ଶ୍ରେଷ୍ଠରାୟ ସାମନ୍ତ, ମଧୁସୁଦନ ହରିବର ସାମନ୍ତ, ନିମାଇଁ ଚରଣ ଚମ୍ପତିସିଂହ ସାମନ୍ତ ଓ ଶ୍ୟାମସୁନ୍ଦର ଗଜେନ୍ଦ୍ର ସାମନ୍ତ । ଦ୍ୱିତୀୟ ରାଣୀଙ୍କ ଗର୍ଭରୁ ଜାତ ହୋଇଥିବା ସନ୍ତାନମାନେ ହେଲେ ଯୁବରାଜ ବୃନ୍ଦାବନ ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର ଖାମ ଭ୍ରମରବର ସାମନ୍ତ, ଉପେନ୍ଦ୍ର କ୍ଷତ୍ରିବର ସାମନ୍ତ ଓ ମଦନ ଗୋପାଳ ରାଜେନ୍ଦ୍ର ସାମନ୍ତ, ତୃତୀୟ ରାଣୀଙ୍କ ଗର୍ଭରୁ ଜାତ ପୁତ୍ରମାନେ ହେଲେ ମାଧବ ହରିଚନ୍ଦନ ସାମନ୍ତ, କମଳ ଲୋଚନ ଦେବେନ୍ଦ୍ର ସାମନ୍ତ ଓ ଶ୍ରୀଚନ୍ଦନ ସାମନ୍ତ ।

ରଣପୁର ରାଜ ବଂଶାବଳୀରୁ ଜଣାପଡ଼େ ଯେ ନୃସିଂହ ବଜ୍ରଧର ନରେନ୍ଦ୍ରଙ୍କ କନ୍ୟା ଗଙ୍ଗ ବଂଶୋଦ୍ଭବ ସାନ ଖେମୁଣ୍ଡି ରାଜା ଜଗନ୍ନାଥ ଦେବଙ୍କ

ସହ ବିବାହ କରିଥିଲେ । ତାଙ୍କର ତିନିପୁତ୍ର—ଯୁବରାଜ ବୃନ୍ଦାବନ ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର, ପଞ୍ଚାପୁତ୍ର ଫକୀର ରାୟସିଂହ ସାମନ୍ତ ଓ ଟୀକାପୁତ୍ର ଗୋପୀନାଥ ଭ୍ରମରରାୟ ସାମନ୍ତ ଯଥାକ୍ରମେ ବଉଦ, ଆଳି ଓ କୁଜଙ୍ଗ ରାଜକନ୍ୟା ମାନଙ୍କର ପାଣିଗ୍ରହଣ କରିଥିଲେ ।

# ବୃନ୍ଦାବନ ବଜ୍ରଧର ନରେନ୍ଦ୍ର

## ଶ୍ରୀ ବୃନ୍ଦାବନ ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର
## ଖ୍ରୀ ୧୭୯୯—୧୮୨୧

ରାଜା ବୃନ୍ଦାବନ ପିତାଙ୍କ ଭଳି ଖୁବ୍ ବଳଶାଳୀ ଥିଲେ । ସେ ସାବଳରେ ଗଣ୍ଠି ପକାଇ ପାରୁଥିଲେ । ଏହିପରି ଗଣ୍ଠି ପଡିଥିବା ଏକ ଶାବଳ ଅଦ୍ୟାବଧି ରଣପୁର ଗଡର ଶ୍ରୀ ଦାମୋଦର ସିଂହଦେଓଙ୍କ ଘରେ ଅଛି । S.S·R.R.E.ରେ ଉଲ୍ଲେଖ ଅଛି—"He was very skillful in battle and was very strong. He was famous for having tied a knot on a sabal (iron bar)."

ତାଙ୍କ ସମୟରେ ରଣପୁର ରାଜ୍ୟ ସହ ନୟାଗଡ଼ ରାଜ୍ୟର ସୁସମ୍ପର୍କ ଥିଲା । ସେ ନୟାଗଡ ରାଜା ବିନାୟକ ସିଂହ ମାନଧାତାଙ୍କ ସହ ସଙ୍ଗାତ ବସିଥିଲେ ।

ଓଡିଶା ଗଜପତି ମୁକୁନ୍ଦ ଦେବ (୩ୟ)ଙ୍କ ସାତ ଅଙ୍କେ ଗଜପତିଙ୍କ ପାଟ ମହାଦେଈ ତାଙ୍କର ନିଜର କେତେକ ଅନୁଗୃହୀତ ଲୋକଙ୍କ ପାଇଁ ରଣପୁର ରାଜାଙ୍କଠାରୁ ଧାନ କରଜ ନେଇଥିଲେ । କିନ୍ତୁ ତାହା ପରିଶୋଧ ନକରିବାରୁ ରାଜା ବୃନ୍ଦାବନ ଅପମାନ ଜନକ ମନ୍ତବ୍ୟ ଦେଇଥିଲେ । ଏଥିରେ କ୍ରୁଦ୍ଧ ହୋଇ ଗଜପତିଙ୍କ ସୈନ୍ୟମାନେ ଅତର୍କିତ ଆକ୍ରମଣ କରି ରଣପୁର ଗଡ଼ ପୋଡିଦେଲେ ଓ ବହୁ ଗ୍ରାମ ଲୁଣ୍ଠନ କଲେ । ଫଳରେ କନ୍ଧ ନୟାଗଡ଼ଠାରେ ଉଭୟ ସୈନ୍ୟ ଦଳଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏହି ଯୁଦ୍ଧରେ କନ୍ଧନୟାଗଡ଼ ଦଳବେହେରା ନିମାଇଁ ଚରଣ ରାଉତରାୟ ନିହତ ହେଲେ । କନ୍ଧନୟାଗଡ-ଠାରେ ଥିବା ଅସ୍ତ୍ରଶସ୍ତ୍ରାଗାରକୁ ଗଜପତିଙ୍କ ସୈନ୍ୟମାନେ ହାଣ୍ଡି ଲଗାଇ ଭାଙ୍ଗି ଦେଲେ । ଏହି ଯୁଦ୍ଧରେ ରଣପୁର ସୈନ୍ୟମାନେ ପରାସ୍ତ ହେବା ସଙ୍ଗେ ସଙ୍ଗେ ବହୁ ସଂଖ୍ୟାରେ ନିହତ ହୋଇଥିଲେ । ଏହି ଯୁଦ୍ଧର କିଛିଦିନ ପରେ ରାଜା

ବୃନ୍ଦାବନ ସିଂହ ନିଜେ ସୈନ୍ୟବଳ ଧରି ପାଇକଭୂଇଁଠାରେ ଖୋର୍ଦ୍ଧା ସୈନ୍ୟଙ୍କ ସହ ଯୁଦ୍ଧକରି ଜୟଯୁକ୍ତ ହୋଇଥିଲେ ।

ରାଜା ବୃନ୍ଦାବନଙ୍କ ସମୟରେ ଓଡଶାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ହୋଇଥିଲା । ଏଥିରେ ରଣପୁର ରାଜା ବକ୍ସି ଜଗବନ୍ଧୁଙ୍କୁ ସାହାଯ୍ୟ କରିଥିବା କଥା Guide to Orissan Records Vol II ରେ ନିମ୍ନମତେ ଉଲ୍ଲେଖ ଅଛି; "Feb 4 1818— Msrtindell, K.C.B Commanding at Cuttack to W.L. Melville, Acting joint Magistrate, Cuttack says that the Raja of Ranpur afforded to protection to Jagabandhu and other rebel leaders and facilited their escape by allowing them to pass through his territory."

ବୃନ୍ଦାବନ ନରେନ୍ଦ୍ର ତାଙ୍କ ନିଜ ନାମରେ ବୃନ୍ଦାବନ ପୁର ଶାସନ ପ୍ରତିଷ୍ଠାକରି ସେଠାରେ ବ୍ରାହ୍ମଣମାନଙ୍କୁ ନିଷ୍କର ଜମିବାଡି ପ୍ରଦାନ କରିଥିଲେ । ତାଙ୍କ ରାଣୀ କୁନ୍ଦନ ଦେଇ "କୁନ୍ଦନ ଦେଈପୁର" ଶାସନ ପ୍ରତିଷ୍ଠା କରିଥିଲେ । କୁନ୍ଦନ ଦେଈପୁର ଶାସନ ବର୍ତ୍ତମାନ ଗୁନ୍ଦପୁର ନିକଟବର୍ତ୍ତୀ କନ୍ଧ ନୟାଗଡ଼ ଗ୍ରାମର ଅନ୍ତର୍ଭୁକ୍ତ ହୋଇଅଛି । ଏହି ଶାସନ ଗଜପତି ମୁକୁନ୍ଦ ଦେବଙ୍କ ଗୁଣ ଅଙ୍କରେ ସ୍ଥାପିତ ହୋଇଥିଲା ବୋଲି ରଣପୁର ରାଜ ବଂଶାବଳୀରୁ ଜଣାପଡେ ।

ସେ ଗୁଣ୍ଡିଚା ଘର ମୂଳ ପରିବର୍ତ୍ତେ ପକ୍କା ନିର୍ମାଣ କରିଥିଲେ ଓ ରଣପୁର ଜଗନ୍ନାଥ ମନ୍ଦିରର ଚତୁଃ ପାର୍ଶ୍ୱରେ ଇଟାର ପ୍ରାଚୀର ନିର୍ମାଣ କରିଥିଲେ । ତାଙ୍କ ସମୟରେ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଶ୍ରୀପୟର, ଶଙ୍ଖ, ଚକ୍ର, ହଳ, ମୂଷଳ, ଆଦି ଅଳଙ୍କାର ରୂପାରେ ଓ କେତେକ ଅଳଙ୍କାର ସୁନାରେ ନିର୍ମିତ ହୋଇଥିଲା । ସେ ବୃନ୍ଦାବନ ବିହାରୀ ମୂର୍ତ୍ତି ରୂପାରେ ନିର୍ମାଣ କରାଇଥିଲେ । ଏହି ମୂର୍ତ୍ତି ଅତି କମନୀୟ । ମୂର୍ତ୍ତିର ପାଦପଦ୍ମରେ ନିମ୍ନଲିଖିତ ଶ୍ଳୋକ ରଚିତ ହୋଇଛି ।

"ଶ୍ରୀ ଶାରଙ୍ଗଧରଣ୍ୟ ମାନବ ପତି ପ୍ରଖ୍ୟାତଃ
କୀର୍ତ୍ତିଃ ସଦ୍ଭୂଭୂପସ୍ତୁତେ ନରସିଂହ ନାମ ଭୂପତଃ
ଭୂପାଳ ଜନାର୍ଦ୍ଦିତଃ କୁନ୍ଦନ୍ତେ ନବନିର୍ମିତା ହରିତନୁ
ବୃନ୍ଦାବନା ଖ୍ୟାତଃ ମୁଦୋସୈବ ପ୍ରତିଷ୍ଠିତଃ ଗଜ
ଯୁଗାସେବୌ ଶକାବ୍ଦେ ନନ୍ଦୂଃ ।"

ବୃନ୍ଦାବନ ବହାଷ୍ଟ ଦେବଙ୍କ ନିକଟରେ ଶୋଭା ପାଉଥିବା ସାତୋଟି କଂଶୋସ୍ତ୍ର ମୂର୍ତ୍ତି ନିର୍ମିତ ହୋଇଥିଲା । କଂଶୋସ୍ତ୍ର ମୂର୍ତ୍ତି ମାନଙ୍କର ପାଦପଦ୍ମରେ ନିମ୍ନମତେ ଶ୍ଳୋକ ରଚିତ ହୋଇଛି ।

"ଶ୍ରୀ ରାମଚନ୍ଦ୍ର ଭବ ଶାରଙ୍ଗଧର ପ୍ରସୂତ
ଶ୍ରୀ ମନ୍ନୃସିଂହ ସୁତ ବଜ୍ରଧରଃ ନରେନ୍ଦ୍ରଃ
ବୃନ୍ଦାବନ ନିଖିଳ ଭୂପତି ଚକ୍ରବର୍ତ୍ତୀ ଶ କେ କୃତାର୍ଦ୍ଧ
ଶ୍ରୁତ ସପ୍ତ ବନ୍ଧୁ କଂଶୋସ୍ତ୍ରଂ ।"

ରାଜା ବୃନ୍ଦାବନ ନରେନ୍ଦ୍ର ପୂର୍ବରେ ଅନୁଷ୍ଠିତ ହେଉଥିବା ଝୂଲଣ ଯାତ୍ରା ଅନୁସାରେ ରଣପୁର ଗଡରେ ଝୂଲଣ ଯାତ୍ରା ଆରମ୍ଭ କରିଥିଲେ । ସେ ପ୍ରଭୁ ଜଗନ୍ନାଥଙ୍କ ବ୍ୟଞ୍ଜନ ଦ୍ୱାଦଶୀକୁ ଅଣ୍ଟାଣିଆ ଭୋଗ ଖଞ୍ଜିଥିଲେ । ତାଙ୍କ ରାଜତ୍ୱରେ ଗଜପତିଙ୍କ ଅଧିନତା ସ୍ୱୀକାର କରୁଥିବା ୧୫ଟି ଗଡଜାତ ଏକ ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଅଧିନତା ସ୍ୱୀକାର କରିଥିଲେ । ଏହି ଗଡଜାତ ଗୁଡିକର ତତ୍କାଳୀନ ରାଜାମାନଙ୍କର ନାମ ନିମ୍ନରେ ପ୍ରଦାନ କଲି ।

ମୟୂରଭଞ୍ଜ— ରାଜା ତ୍ରିବିକ୍ରମ ଭଞ୍ଜ
ନୀଳଗିରି - ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ମହାପାତ୍ର
କେନ୍ଦୁଝର— ରାଜା ଜନାର୍ଦ୍ଦନ ଭଞ୍ଜ
ଢେଙ୍କାନାଳ— ରାଜା କୃଷ୍ଣଚନ୍ଦ୍ର ସିଂହ ମହୀନ୍ଦ୍ର ବାହାଦୁର
ତାଳଚେର— ରାଜା ଭଗୀରଥି ହରିଚନ୍ଦନ ମହାପାତ୍ର
ହିନ୍ଦୋଳ— ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଜଗଦେବ
ଅାଠଗଡ – ରାଜା ଶ୍ରୀକରଣ ଗୋପିନାଥ ବେବର୍ତ୍ତା ପଟ୍ଟନାୟକ
ତିଗିରିଆ – ରାଜା ସୁଦର୍ଶନ ଛୋଟ୍ରି ସିଂହ
ବଡମ୍ବା— ରାଜା ପିଣ୍ଡିକ ମଙ୍ଗରାଜ
ନରସିଂହପୁର – ରାଜା ଜଗନ୍ନାଥ ମାନସିଂହ ହରିଚନ୍ଦନ ମହାପାତ୍ର
ବାଙ୍କୀ – ରାଜା ବ୍ରଜବହାଷ୍ଟ ହରିଚନ୍ଦନ
ରଣପୁର – ରାଜା ବୃନ୍ଦାବନ ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର
ନୟାଗଡ – ରାଜା ବିନାୟକ ସିଂହ ମାନଧାତା
ଖଣ୍ଡପଡା – ରାଜା ନୃସିଂହ ଭ୍ରମରବର ମର୍ଦ୍ଦରାଜ
ଦଶପଲ୍ଲା – ରାଜା କୃଷ୍ଣଚନ୍ଦ୍ର ଭଞ୍ଜ

ଉପରୋକ୍ତ ରାଜ୍ୟଗୁଡ଼ିକ ଇଷ୍ଟ ଇଣ୍ଡିଆ କମ୍ପାନୀର କରଦ ରାଜ୍ୟରେ ପରିଗଣିତ ହୋଇଥିଲେ । ଓଡ଼ିଆ ଭାଷାଭାଷୀ ଗଡ଼ଜାତ ଗୁଡ଼ିକ ୩ ଶ୍ରେଣୀରେ ବିଭକ୍ତ ଯଥା - ଓଡ଼ିଶା ଗଡ଼ଜାତ, ସମ୍ବଲପୁର ଗଡ଼ଜାତ ଓ ଗଞ୍ଜାମ ଗଡ଼ଜାତ । ଉପର ବର୍ଣ୍ଣିତ ୧୫ଟି ଗଡ଼ଜାତ 'ଓଡ଼ିଶା ଗଡ଼ଜାତ' ଶ୍ରେଣୀଭୁକ୍ତ ଥିଲି । ଗଜପତି ମହାରାଜା ସେମାନଙ୍କର ମୁଖ୍ୟ ଥିଲେ । ଉକ୍ତ ୧୫ଟି ଗଡ଼ଜାତ ବ୍ୟତୀତ 'ଓଡ଼ିଶା ଗଡ଼ଜାତ' ଶ୍ରେଣୀଭୁକ୍ତ ଥିବା ଅନ୍ୟ ଗଡ଼ଜାତ ଗୁଡ଼ିକ ଇଷ୍ଟ ଇଣ୍ଡିଆ କମ୍ପାନୀ ସହ ଯୁଦ୍ଧକରି ପରାସ୍ତ ହୋଇଥିଲେ । ଜୟୀ ରାଜଗୁରୁ ଓ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ଏହି ଯୁଦ୍ଧ ହୋଇଥିଲି । ଏହାକୁ ପାଇକ ବିଦ୍ରୋହ କୁହାଯାଏ । ବିଦ୍ରୋହରେ ଯୋଗଦେଇ ରାଜ୍ୟ ହରାଇଥିବା ମୁଖ୍ୟ ମାନଙ୍କର ନାମହେଲି— ଖୋର୍ଦ୍ଧାରେ ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ, ଆଳରେ ରାଜା ମଧୁସୂଦନ ଦେବ, କନକାରେ ରାଜା ଯଦୁନାଥ ଭଞ୍ଜ, କୁଜଙ୍ଗରେ ରାଜା ମଧୁସୂଦନ ଷଣ୍ଢ, ମଧୁପୁରରେ ରାଜା ବୀର ଦୁର୍ଦ୍ଦନ ଧିର ନରେନ୍ଦ୍ର, ସୁକିନ୍ଦାରେ ରାଜା ଧ୍ରୁବରାଜ ଭୂପତି ହରିଚନ୍ଦନ ମହାପାତ୍ର, ପଟିଆରେ ରାଜା ମଧୁସୂଦନ ନରେନ୍ଦ୍ର ଓ ଡମପଡ଼ାରେ ରାଜା ପୁରୁଷୋତ୍ତମ ମାନସିଂହ ଭ୍ରମରବର ରାୟ ରାଜୁତି କରିଥିଲେ । ଏହି ରାଜାମାନେ ଖୋର୍ଦ୍ଧା ଗଜପତିଙ୍କ ସେନାପତି ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ଯୋଗଦେଇ ଇଷ୍ଟ ଇଣ୍ଡିଆ କମ୍ପାନୀ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଫଳରେ ସେମାନଙ୍କ ରାଜ୍ୟ କମ୍ପାନୀ ଅଧୀନକୁ ଚାଲି ଯାଇଥିଲି ଓ କେତେକ ରାଜା ପରେ ଅଧୀନତା ସ୍ୱୀକାର କରି ଜମିଦାର ରୂପେ ରହିଥିଲେ ।

ସ୍ୱାଧୀନତା ପ୍ରାପ୍ତି ପୂର୍ବ ପର୍ଯ୍ୟନ୍ତ ଯେଉଁ ରାଜା ଓ ଧନୀ ବ୍ୟକ୍ତିମାନେ ଜମିଦାରୀ ନିଲାମ ନେଇ ଜମିଦାର ହୋଇଥିଲେ ସେମାନଙ୍କ ଜମିଦାରୀର ନାମ ନିମ୍ନରେ ସୂଚୀତ ହୋଇଛୁ । ସେମାନେ ହେଲେ ଆଳ, କନକା, କୁଜଙ୍ଗ, ସୁକିନ୍ଦା, ଦର୍ପଣି, ପଟିଆ, ପାରିକୁଦ, ଡମପଡ଼ା, ମଧୁପୁର, ଜୟପୁର, ପାରଳାଖେମୁଣ୍ଡି, ସାନଖେମୁଣ୍ଡି, ବଡ଼ଖେମୁଣ୍ଡି, ଶେରଗଡ଼?, ଟାଲୁର, ମହୁରୀ, ସୁରଙ୍ଗୀ, ଧରାକୋଟ, ଆଠଗଡ଼ (ଗଞ୍ଜାମଜିଲ୍ଲା), ଖଲ୍ଲିକୋଟ, ବୁମା, ବିଷମ କଟକ, ବୁଢ଼ା ସମ୍ବର, ଜରଡ଼ା, ବିରଡ଼, ବିଷ୍ଣୁପୁର, ବଳରାମପୁର, କଣ୍ଡାଙ୍ଗିର, ରଗଡ଼, ଚଉଷଠି ପଡ଼ା, ଓ ଖଡ଼ିଆଳ ପ୍ରଭୃତି ।

ସ୍ୱାଧୀନତା ପରେ ସମସ୍ତ ଗଡ଼ଜାତ ଓ ଜମିଦାରୀ ଓଡ଼ିଶା ସହ ମିଶ୍ରଣ ହୋଇ ବୃହତ୍ତର ଓଡ଼ିଶା ଗଠିତ ହୋଇଛୁ ।

# ବ୍ରଜସୁନ୍ଦର ବଜ୍ରଧର ନରେନ୍ଦ୍ର

## ରାଜା ଶ୍ରୀ ବ୍ରଜସୁନ୍ଦର ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର

## ଖ୍ରୀ. ୧୮୨୧   ୧୮୪୨

ରାଜା ବ୍ରଜସୁନ୍ଦର ବଡ଼ ଯୋଦ୍ଧା ଥିଲେ । ତାଙ୍କ ଭାଇ ପୁଣ୍ଡରୀକାକ୍ଷ ମର୍ଦ୍ଦରାଜ ସାମନ୍ତ ଟିକାୟତ ରୂପେ ତାଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ତଦାନନ୍ତୀନ ମଧୁସୂଦନ ସିଂହ ବରବର ସାମନ୍ତଙ୍କ ପୁତ୍ର ଘନବନ୍ଧୁ ଜଣେ ମଲ୍ଲଯୋଦ୍ଧା ରୂପେ ସମଗ୍ର ଉତ୍କଳ ପ୍ରଦେଶରେ ଖ୍ୟାତି ଅର୍ଜନ କରିଥିଲେ ।

ରାଜା ବ୍ରଜସୁନ୍ଦରଙ୍କ ସମୟରେ ଓଡ଼ିଶା ଗଡ଼ଜାତର ରାଜାମାନେ ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାରଙ୍କ ପରିଚାଳନାରେ ଥିଲେ । କମ୍ପାନୀ ପକ୍ଷରୁ ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ କଟକରେ ଅବସ୍ଥାନ କରୁଥିଲେ ।

କଥିତ ଅଛି କମ୍ପାନୀ ପକ୍ଷରୁ ଗଡ଼ଜାତ ରାଜାମାନଙ୍କର ଏକ ସଭା କଟକରେ ଅନୁଷ୍ଠିତ ହୋଇଥାଏ । ଏହି ସଭାକୁ ରଣପୁର ରାଜା ବ୍ରଜସୁନ୍ଦର ନିମନ୍ତ୍ରିତ ହୋଇଥାନ୍ତି । ମଲ୍ଲବର ଘନବନ୍ଧୁ ସିଂହ ସାମନ୍ତ ରାଜାଙ୍କର ସମ୍ପର୍କୀୟ ଭାଇ । ସେ କଟକ ସମ୍ମିଳନୀରେ ଯୋଗଦେବା ପାଇଁ ରାଜାଙ୍କ ସଙ୍ଗେ ଯାଇ ଥିଲେ । କିନ୍ତୁ ଏହି ସମ୍ମିଳନୀରେ କେବଳ ରାଜାଙ୍କ ଭିନ୍ନ ଅନ୍ୟକେହି ଯୋଗ ଦେବାର ନିଷେଧ ଥିଲା । ଏହି ସମ୍ମିଳନୀ ଗୃହରେ ପ୍ରବେଶ ପାଇଁ ତିନୋଟି ଦ୍ୱାର ଥିଲା । ପ୍ରତ୍ୟେକ ଦ୍ୱାରରେ ଦୁଇଜଣ ଲେଖାଏଁ ମଲ୍ଲବୀର ରକ୍ଷୀଭାବରେ ରହିଥାନ୍ତି । ରାଜା ବ୍ରଜସୁନ୍ଦରଙ୍କ ସଙ୍ଗରେ ମଲ୍ଲବର ଘନବନ୍ଧୁ ସିଂହ ସାମନ୍ତ ସମ୍ମିଳନୀ ଗୃହ ମଧ୍ୟକୁ ପ୍ରବେଶ କରିବା ପାଇଁ ଉଦ୍ୟତ ହେଲେ । ରକ୍ଷୀ ମଲ୍ଲମାନେ ରାଜାଙ୍କୁ ସମ୍ମାନ ସହକାରେ ପାଚ୍ଛୋଟି ନେବା ସଙ୍ଗେ ସଙ୍ଗେ ଘନବନ୍ଧୁ ସିଂହଙ୍କୁ ପଥରୋଧ କଲେ । ସେ କିନ୍ତୁ ମଲ୍ଲମାନଙ୍କୁ ଠେଲି ସମ୍ମିଳନୀ ଗୃହକୁ ପ୍ରବେଶ କଲେ । ସମ୍ମିଳନୀ କକ୍ଷରେ ଦେଖାଗଲା ଘନବନ୍ଧୁ ସିଂହଙ୍କ ଦୁଇ ସ୍କନ୍ଧରେ ୩ଜଣ ଲେଖାଏଁ ମଲ୍ଲରକ୍ଷୀ ଝୁଲୁଛନ୍ତି । ଏହା ଉପସ୍ଥିତ ଥିବା ରାଜାମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ରାଜନ୍ୟ ସମ୍ମିଳନୀର ଅଧ୍ୟକ୍ଷ ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ରଣପୁର ରାଜାଙ୍କ ଠାରୁ ଘନବନ୍ଧୁ ସିଂହଙ୍କର ପରିଚୟ ଲାଭ କଲେ । ପରେ ତାଙ୍କ ସହ କୁସ୍ତି ପ୍ରତିଯୋଗିତା କରିବା ପାଇଁ ମାଡ୍ରାସରୁ ଜଣେ ବିଖ୍ୟାତ ମଲ୍ଲଯୋଦ୍ଧାକୁ ଡକାଇଥିଲେ । ମାଡ୍ରାସରୁ ଆସିଥିବା

ମଲ୍ଲଯୋଦ୍ଧା ଘନବନ୍ଧୁ ସିଂହଙ୍କ ଠାରୁ ଶୋଚନୀୟ ଭାବେ ପରାଜୟ ବରଣ କରିଥିଲେ ।

ସେତେବେଳେ ରଣପୁରରେ ଅନୁଷ୍ଠିତ ରଥଯାତ୍ରାରେ ବୃହତକାୟ ରଥମାନ ନିର୍ମିତ ହେଉଥିଲା । ଏହି ରଥର ଆକାର ଅଧୁନା ପୁରୀ ରଥର ତିନି କିମ୍ବା ଚାରିଗୁଣ ଥିଲା । ରଣପୁର ବଡ଼ଦାଣ୍ଡ କଚା ମାଟି ସଡ଼କ ଥିଲା । ଏଥିରେ ରଥ ଗଡିବା ସମୟରେ ବେଳେ ବେଳେ କୌଣସି ନା କୌଣସି ମାର୍ଗରେ ଲାଗି ଯାଉଥିଲା । ଘନବନ୍ଧୁ ସିଂହ ଏକାକୀ ରଥକୁ ରାସ୍ତା ଉପରକୁ ନେଇ ଆସିପାରୁଥିଲେ । କିନ୍ତୁ ଏହି ପ୍ରଖ୍ୟାତ ଯଶା ମଲ୍ଲବୀର ମାତ୍ର ୨୯ ବର୍ଷ ବୟସରେ ପରଲୋକ ଗମନ କରିଥିଲେ । ପୁଷ୍ପ ସୁବାସର ମହକ ଚତୁର୍ଦ୍ଦିଗକୁ ବିତରଣ ହେବା ପୂର୍ବରୁ ମଉଳି ଯାଇଥିଲା । ସେ ଲୋକଲୋଚନର ଅନ୍ତରାଳରେ ରହିଗଲେ । ତାଙ୍କ ପୁତ୍ର କୁଞ୍ଜ ସାମନ୍ତ ଏବଂ ପୌତ୍ର ନଟବର ସାମନ୍ତ ଓ ମାନକେତନ ସାମନ୍ତଙ୍କ ପରଲୋକ ଗମନ ପରେ ଏହି ବଂଶର କେହି ଦାୟାଦ ନଥିବା ଜଣାପଡେ । ତାଙ୍କ ରାଜତ୍ୱରେ ଗଡ ବାଣୀକଲ ଗ୍ରାମର ଦଳେଇ ଦାମ ବଳିଆରସିଂହ ଜଣେ ବିଶିଷ୍ଟ ମଲ୍ଲଯୋଦ୍ଧା ଥିଲେ ।

ରାଜା ବ୍ରଜସୁନ୍ଦରଙ୍କ ସମୟରେ ରଣପୁର ସହ ନୟାଗଡ ରାଜ୍ୟର ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ଗଜପତି ମହାରାଜା ରାମଚନ୍ଦ୍ର ଦେବ (ଷଷ୍ଠ)ଙ୍କ ଚଉଦ ଅଙ୍କରେ ହୋଇଥିବା ଜଣାପଡେ । ଏଥିରେ ଇଷ୍ଟ ଇଣ୍ଡିଆ କମ୍ପାନୀ କର୍ତ୍ତୃପକ୍ଷ ହସ୍ତକ୍ଷେପ କରିବାରୁ ଯୁଦ୍ଧର ଅବସାନ ହୋଇଥିଲା ।

ରାଜା ବ୍ରଜସୁନ୍ଦର ଜଣେ ଦାନୀରୂପେ ପରିଚିତ । ସେ ବ୍ରାହ୍ମଣ ବୈଷ୍ଣବମାନଙ୍କୁ ବହୁ ଅର୍ଥ ଦାନ କରୁଥିଲେ । ସେ ନିଜ ନାମରେ ବ୍ରଜ ସୁନ୍ଦରପୁର ଶାସନ ପ୍ରତିଷ୍ଠା କରିଥିଲେ । ସେଠାରେ ବ୍ରାହ୍ମଣମାନଙ୍କୁ ନିଷ୍କର ଜମିବାଡି ପ୍ରଦାନ କରିଥିଲେ । ସେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ଫଳରେ ବହୁ ସାଧୁ ସନ୍ଥ ରାଜ୍ୟକୁ ଆସି ସମ୍ମାନିତ ହେଉଥିଲେ ।

ଗଞ୍ଜାମ ଆଠଗଡ଼ର ରାଜା ରାମଚନ୍ଦ୍ର ହରିଚନ୍ଦନ ଜଗଦେବ ରଣପୁର ରାଜା ବ୍ରଜସୁନ୍ଦରଙ୍କ ଠାରୁ ସ୍ୱରଲକ୍ଷ ଟଙ୍କା ଧାର ନେଇଥିଲେ । କିନ୍ତୁ ସେ ଫେରସ୍ତ ଦେଲେ ନାହିଁ । ଅଥଚ ଆଠଗଡ ରାଜା ଖଲିକୋଟ ରାଜାଙ୍କ ଠାରୁ ତିନଲକ୍ଷ ଟଙ୍କା ଧାର ନେଇ ତାହା ପରିଶୋଧ ନକରିବାରୁ ଖଲିକୋଟ ରାଜା ଶ୍ରୀ ନାରାୟଣ ମର୍ଦ୍ଦରାଜ ଦେଓ ଯୁଦ୍ଧକରି ଆଠଗଡ

ରାଜ୍ୟକୁ ନିଜ ରାଜ୍ୟରେ ସାମିଲ କରାଇଥିଲେ । ଏହା ହାସ୍ୟରସିକ କବି ଯଦୁମଣି କବିତା ମାଧ୍ୟମରେ ପ୍ରକାଶ କରିଛନ୍ତି ।

ରାଜା ବ୍ରଜ ସୁନ୍ଦରଙ୍କ ସମ୍ପର୍କରେ S.S.R.R.E. ରେ ନିମ୍ନମତେ ଉଲ୍ଲେଖ ଅଛି— "He treated the people with parental affection and did many works. He spent much of his time in reading religious book in the company of Baishnabs. He brought about improvements in the administration. He built another temple of Maninag at the foot of the hill for daily worship by the people.'

ଏଥିରୁ ମଧ୍ୟ ଜଣାଯାଏ ଯେ ମଣିନାଗ ପର୍ବତର ଶିଖର ଦେଶରେ ପ୍ରତିଷ୍ଠିତ ଦୁର୍ଗା ଦେବୀଙ୍କ ମନ୍ଦିରକୁ ପ୍ରତିଦିନ ପୂଜକ ଯାଇ ପୂଜାବିଧି କରିବାରେ ଅସୁବିଧା ସୃଷ୍ଟି ହେବାରୁ ସେ ପର୍ବତର ପାଦଦେଶରେ ଦେବୀଙ୍କ ପାଇଁ ଅନ୍ୟ ଏକ ମନ୍ଦିର ନିର୍ମାଣ କରାଇଥିଲେ । ତଳ ମଣିନାଗ ମନ୍ଦିର ରାଜା ବ୍ରଜ ସୁନ୍ଦରଙ୍କ କୀର୍ତ୍ତି ଅଟେ । କବି ବଳରାମ ସ୍ୱାଇଁ 'ମଣିନାଗେ' କାବ୍ୟରେ ଏହି ମନ୍ଦିର ନିର୍ମାଣ ସମ୍ବନ୍ଧରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି—

ପୂଜକ ଆସି ନପାରିଲି
  ପୂର୍ବେ ନିତି ଏଠାରେ
କିବା ବାଧାହେଲି ଦେବୀଙ୍କ
  ଏ ବିଜନ ବିହାରେ ।।
ସ୍ୱପ୍ନେ କହିଲ, "ହେ ରାଜନ
  ଯିବ କାଲି ପ୍ରଭାତେ
ମୋ ମନ୍ଦିରୁ ଗରା ଗଡ଼ାଇ
  ଦେବ ଆପଣା ହାତେ ।।
ଗରା ଗଡ଼ି ଗଡ଼ି ଯେ ସ୍ଥାନେ
  ଯାଇ ହୋଇବ ସ୍ଥିର
ଏହି ଗିରି ପାଦ ଦେଶରେ
  ତୋଳ ମୋର ମନ୍ଦିର ।।
ବନ ପ୍ରକୃତିର ସୁଷମା
  ନିତ୍ୟ ବିରାଜେ ଯହିଁ

ମନୋହର ବାତାବରଣେ
ଗଲା ରହିଲା ଚିହ୍ନ ॥
"ଭଳ ମଣିନାଗ" ନାମରେ
ଧରି ଭୈରବଙ୍କ ମୂର୍ତ୍ତି
ପୂଜା ପାଉଅଛୁ କାମନା –
ସବୁ କରୁଛୁ ପୂର୍ତ୍ତି ॥"

ରାଜା ବ୍ରଜ ସୁନ୍ଦର ରଣପୁର ଗଡରେ ପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥ ଠାକୁରଙ୍କ ପାଇଁ ଅହ୍ଣିଆ ଭୋଗ, ମକର ଚୌରାଶୀ ଭୋଗ, ମେଷ ମାସରେ କାନ୍ତି ପଣା, ଶ୍ରୀ ଗୁଣ୍ଡିଚା ଯାତରେ ପାହାନ୍ତି ଖେଚେଡି ଏବଂ ଶ୍ରାବଣ ମାସରେ ଶ୍ରାବଣ ଖିରି ଖଞ୍ଜାଇଥିଲେ । ସେ ବଡ ସଙ୍ଗୀତପ୍ରିୟ ଥିଲେ । ସେ କୃଷ୍ଣ ଭକ୍ତ ହୋଇଥିବାରୁ ରାସ ଲୀଳା ରଣପୁରରେ ଆଦର ଲାଭ କରିଥିଲା । ଶିଶୁ ବନମାଳୀ ଦାସଙ୍କ ରାସ ସଙ୍ଗୀତ ଓ ସାନପଦର ନିବାସୀ ପିଣ୍ଡିକ ଶ୍ରୀଚନ୍ଦନଙ୍କ ରାସ ସଙ୍ଗୀତ ରଣପୁରରେ ଜନପ୍ରିୟ ହୋଇଥିଲା ।

# ବେଣୁଧର ବଜ୍ରଧର ନରେନ୍ଦ୍ର

## ରାଜା ଶ୍ରୀ ବେଣୁଧର ସିଂହଦେଓ ବଜ୍ରଧର ନରେନ୍ଦ୍ର ମହାପାତ୍ର
## ଖ୍ରୀ ୧୮୪୨–୧୮୯୯

ରାଜା ବେଣୁଧର ନରେନ୍ଦ୍ର ଏହି ରାଜବଂଶରେ ଦୀର୍ଘତମ ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ସମୟରେ ଜଳସେଚନ ପାଇଁ ବନ୍ଧ ନିର୍ମାଣ ଓ ପୁଷ୍କରଣୀ ଖନନ ଆଦି ଜନହିତକର କାର୍ଯ୍ୟ ସମ୍ପାଦିତ ହୋଇଥିଲା । ରଣପୁର ଗଡ଼ର ଦକ୍ଷିଣ ପାର୍ଶ୍ୱରେ ଥିବା ସାଗର ପୁଷ୍କରଣୀ ଏଥି ମଧ୍ୟରୁ ଅନ୍ୟତମ ଅଟେ । ଜନସାଧାରଣଙ୍କ ଯାତାୟତ ପାଇଁ ରଣପୁର ଠାରୁ ନରସିଂହପୁର, ଲେଧାବୁଆ ଠାରୁ ଗଡ଼ ବାଣିକଲେ ଏବଂ ଗୃନ୍ଦପୁର ଠାରୁ ରାଜ-ସୁନାଖଳା ରାସ୍ତା ତାଙ୍କ ସମୟରେ ନିର୍ମିତ ହୋଇଥିଲା ।

ପୂର୍ବରୁ ରାଜ୍ୟରେ ଆନୁଷ୍ଠାନିକ ଶିକ୍ଷାର ବ୍ୟବସ୍ଥା ନଥିଲା । କେବଳ ସଂସ୍କୃତ ଶିକ୍ଷାର ବ୍ୟବସ୍ଥା ପାଇଁ ଏକ ସଂସ୍କୃତ ଟୋଲ ଥିଲା । ରାଜା ବେଣୁଧର ନରେନ୍ଦ୍ରଙ୍କ ସମୟରେ ରଣପୁର ଗଡରେ ମାଇନର ସ୍କୁଲ, ରାଜ-ସୁନାଖଳା, ଗୋପାଳପୁର ଓ ଗଡ଼ ବାଣିକିଲେଠାରେ ପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠା

ହୋଇଥିଲା । ପୂର୍ବରୁ ରଣପୁର ଗଡରେ ଡାକଘର, ଡାକ୍ତରଖାନା, ସର୍କିଟ ହାଉସ, ଜେଲଖାନା ଓ ଧର୍ମଶାଳା ନିର୍ମିତ ହୋଇଥିଲା ।

ସେ ରଣପୁର ଗଡରେ ପଞ୍ଚ ଦୋଳ ଯାତ୍ରା ଆରମ୍ଭ କରାଇଥିଲେ । ଏଥିରେ ୧୯୮ଟି ଦୋଳ ଭାଗ ନେଇଥାନ୍ତି । ଅଧୁନା ରାଜବାଟୀ ସମ୍ମୁଖରେ ଥିବା ଦୋଳବେଦୀ ତାଙ୍କ କୀର୍ତ୍ତି ଅଟେ ସେ ବେଣୁଧରପୁର ଶାସନ ସ୍ଥାପନ କରି ବ୍ରାହ୍ମଣମାନଙ୍କୁ ନିଷ୍କର ଜମି ପ୍ରଦାନ କରିଥିଲେ ।

ରାଜା ବେଣୁଧର ଦାନଶୀଳ ରାଜାରୂପେ ପରିଚିତ । ବ୍ରାହ୍ମଣ ପଣ୍ଡିତ ମାନେ ରାଜାଙ୍କଠାରୁ ବହୁ ଅର୍ଥ ଓ ଦ୍ରବ୍ୟମାନ ଦାନ ସ୍ୱରୂପ ଲାଭ କରିଥିଲେ । ଏପରିକି ଉତ୍କଳ ଘଣ୍ଟ କବି ଯଦୁମଣି ମହାପାତ୍ର ବୃଦ୍ଧାବସ୍ଥାରେ ଅସହାୟ ହୋଇ ଏକ କବିତା ଲେଖି ରାଜା ବେଣୁଧରଙ୍କ ଠାରୁ ଅର୍ଥ ସାହାଯ୍ୟ ଲୋଡ଼ିଥିଲେ । ସେ ଯଥେଷ୍ଟ ଅର୍ଥ ସାହାଯ୍ୟ କରି କବିଙ୍କର ଦୁଃଖମୋଚନ କରିଥିଲେ । କବି ଯଦୁମଣି ଯେଉଁ କବିତା ଲେଖି ରଣପୁର ରାଜାଙ୍କୁ ପଠାଇଥିଲେ ତାହା ନିମ୍ନରେ ଉଲ୍ଲେଖ ହେଲା –

"ମଣି ଫଣି ଭବରମଣୀ ଉଦ୍ଭବ ଧରଣୀଧର ପାରେଶ୍ୱର
ଦୁର୍ଗେଶ୍ୱର ବଜ୍ରଧର ବେଣୁଧର ନରେନ୍ଦ୍ର ମହାପାତ୍ରଙ୍କର
ରାଜେ ରାଜତ୍ୱ
ବିରାଜେ ମହା ମହିମାରେ
ଥାନା ଫାଣ୍ଡି ଡାକ ବଙ୍ଗଳା ପତାକା ଉଡ଼ଇ ନାହିଁ ସେ ସୀମାରେ ।୧
ହରିଚନ୍ଦନ ଜଗଦେବ ୯ ଲକ୍ଷ ଟଙ୍କା ମୁଲକର ମାଲିକ
ସେ ହେଲେ ଗୃହକ ଧନ ଘନୋଦକ ବରଷୁ ଦେଉଙ୍କ ଜନକ
ଅଣ୍ଡା ଭଜି ସେ
ମୁଣ୍ଡାଇଲେ ମୁଖେ ଏ ଗୀର
ଖଣ୍ଡାଇତ ବଂଶେ ଭଣ୍ଡାର କଲେ ସେ ଧଣ୍ଡାବନ୍ଧା ରଣପୁରର ।୨
ତାଙ୍କୁ ତୁଚ୍ଛକରି ଦେବାର ଇଚ୍ଛାକୁ ଶ୍ରୀଦେଉ କରିଛ ଅନେକ
ଦୁଃଖୀରଙ୍କି ଖାଙ୍କି ଗୁଣୀ ଗୁଣବନ୍ତ ଜନେ ବରଷିଛ କନକ
ଯେଉଁ କାଳରେ
ଉତ୍କଳ ଦେଶରେ ଛନ୍ଦଭଙ୍ଗ
ସେକାଳେ ଗୁଣକ ପୁଲିଇ ଛତକ ଟେକାଇ ଅଛୁ ଉତ୍ତମାଙ୍ଗ ।୩

ଲୁଣ୍ଠରାଜ ରାଜେ ଭୂମି ଶଫବାଷ୍ଟୀ ସେ ମୋର ଦେଉଛି ବନ୍ଧାରେ
ଅଷ୍ଟ ପ୍ରାଣୀ ମୋର କଷ୍ଟ ପାଉଛନ୍ତି ଦେଉଛି ମହା ଧନ୍ଦାରେ
ଦଣି ମଣିମା
ସଟିଲା ସରିଲା ସଟିଲା
ହାତୁଣୀ ବଳ୍ଲଭ ଦ୍ୱାରନୁସରଣେ ନାତୁଣୀ ବଲ୍ଲଭେ ପେଟିଲା ।୪।

ରାଜା ବେଣୁଧରଙ୍କ ସମୟରେ ବହୁ ଉଲ୍ଲେଖନୀୟ ଘଟଣା ସାଧିତ ହୋଇଥିଲେ ମଧ୍ୟ ଗଜପତି ଦିବ୍ୟସିଂହ ଦେବଙ୍କ ନଅଅଙ୍କ(ଖ୍ରୀ ୧୮୬୬ଖ୍ରୀଷ୍ଟାବ୍ଦ)ରେ ଘଟିଥିବା ଦୁର୍ଭିକ୍ଷର କରାଳ ଦାଉରୁ ରଣପୁର ରକ୍ଷା ପାଇ ପାରିନଥିଲା । ରାଜ୍ୟର ବହୁ ପ୍ରଜା ଦୁର୍ଭିକ୍ଷର ଶିକାର ହୋଇ ପୋକମାଛି ଭଳି ମୃତ୍ୟୁବରଣ କରିଥିଲେ । ବହୁ ପ୍ରଜା ରାଜ୍ୟ ଛାଡ଼ି ଚାଲିଯାଇଥିଲେ । ତତ୍କାଳୀନ ପୁରୀର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ Mr. Lacey ରଣପୁର ରାଜ୍ୟ ପରିଦର୍ଶନ କରି ତା ୨୦।୧୦।୧୮୬୬ରେ ପୁରୀ କଲେକ୍ଟରଙ୍କ ପାଖକୁ ଦେଇଥିବା ଚିଠିର କେତେକାଂଶ ନିମ୍ନରେ ପ୍ରଦାନ କଲି । ଏହା "The Famine of 1866" ପ୍ରସଙ୍ଗରେ O.H.R.J. – Vol VI Part I ର ୬୯ ପୃଷ୍ଠାରେ ଉଲ୍ଲେଖଅଛି- "In the native state of Ranpur there is almost literally not an ear of corn. Half of the male inhabitants of those villages had fled, leaving their wives and children in search of employment. The women lived by picking a kind of sagh or herb and small bulbs of common grass which they cooked for food."

ରାଜା ବେଣୁଧରଙ୍କ ସମୟରେ ରାଜ୍ୟରେ ପ୍ରଥମ କରି ଠିକ୍‌କରି ଭୂମି ବନ୍ଦୋବସ୍ତ ହୋଇଥିଲା । ଏହା ପୂର୍ବରୁ ଘଟିଥିବା ବନ୍ଦୋବସ୍ତ ଗୁଡ଼ିକରେ ଜମି ମାପ ପାଇଁ ବାଉଁଶ ଦଣ୍ଡ ବ୍ୟବହାର ହେଉଥିଲା ଓ ତାଳପତ୍ରରେ ରେକର୍ଡ଼ ଉଲ୍ଲେଖ ରହୁଥିଲା । ରାଜା ନୃସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କ ସମୟରେ ୩୦,୦୦୦ କାହାଣ କଉଡ଼ି ରାଜସ୍ୱରୁ ଆଦାୟ ହେଉଥିଲା । ତାଙ୍କ ପୁତ୍ର ବୃନ୍ଦାବନ ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କ ସମୟରେ ଏହି କଉଡ଼ି ପରିମାଣ ୬୩,୦୦୦ କାହାଣ କଉଡ଼ିକୁ ବୃଦ୍ଧି ପାଇଥିଲା । ତାଙ୍କ ପରେ ରାଜା ବ୍ରଜସୁନ୍ଦର ଏହି କଉଡ଼ି ଆଦାୟ ପରିବର୍ତ୍ତେ ଧାନ ଓ ଟଙ୍କା ରାଜସ୍ୱ ଆଦାୟର ବ୍ୟବସ୍ଥା

କରିଥିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନକୁ ଆସିବା ହେତୁ କଉଡି ରାଜସ୍ୱ ଆଦାୟ ବନ୍ଦ ହୋଇଥିଲା । ଫଳରେ ରାଜ୍ୟର ରାଜସ୍ୱ ୧୯୦୦ ଭରଣ ଧାନ ଓ ଟ୧୧୭୭୭/- ଆଦାୟ ହେଉଥିଲା । ଏହି ରାଜସ୍ୱକୁ ଭିତ୍ତିକରି ରଣପୁର ରାଜ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଟ୧୪୦୦/- ପେସିକସ୍ ଦେବାପାଇଁ ଧାର୍ଯ୍ୟ ହୋଇଥିଲା ।

ରାଜା ବେଣୁଧରଙ୍କ ସମୟ ପର୍ଯ୍ୟନ୍ତ ଉଭୟ ଅର୍ଥ ଓ ଧାନ ରାଜସ୍ୱ ଆକାରରେ ଆଦାୟ ହେଉଥିଲା । କିନ୍ତୁ ଶସ୍ୟ ଆଦାୟକାରୀ କର୍ମଚାରୀମାନେ (ପାଟମାନେ) ବିଭିନ୍ନ ଉପାୟରେ ଜୁଲୁମ କରି ନିର୍ଦ୍ଧାରିତ ହାରଠାରୁ ଅଧିକ ଶସ୍ୟ ଆଦାୟ କରୁଥିଲେ । ଏଣୁ ୧୮୭୭ ଖ୍ରୀଷ୍ଟାବ୍ଦରେ ପ୍ରଜାମାନେ ଶସ୍ୟ ଆକାରରେ ରାଜସ୍ୱ ଆଦାୟର ବିରୋଧ କରି ଅର୍ଥ ଆକାରରେ ରାଜସ୍ୱ ଆଦାୟ ପାଇଁ ଦାବି କରିଥିଲେ । ତତ୍କାଳୀନ ଏହି ଦାବି 'ମେଳି' ଆଖ୍ୟା ପାଇଥିଲା ।

ଘଟଣା କ୍ରମେ ପ୍ରଜାମାନଙ୍କର ଏହି ମେଳି ସାଙ୍ଘାତିକ ରୂପ ନେଲା । ପ୍ରଜାମାନଙ୍କର ଏହି ଦାବି ବ୍ରିଟିସ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଗଲା । ଫଳରେ ପଲିଟିକାଲ ଏଜେଣ୍ଟ ଓ ବାବୁ ନନ୍ଦ କିଶୋର ଦାସ ରଣପୁର ଆସି ମେଳିର କାରଣ ଅନୁସନ୍ଧାନ କଲେ । ପ୍ରତିକାର ସ୍ୱରୂପ ନୂତନ ବନ୍ଦୋବସ୍ତ ହୋଇ ରାଜସ୍ୱ ଆଦାୟର ଢାଞ୍ଚା ବଦଳିଥିଲା ।

ନୂତନ ଭୂମିବାଡ଼ି ବନ୍ଦୋବସ୍ତ ୧୮୭୭ ଖ୍ରୀଷ୍ଟାବ୍ଦରୁ ୧୮୭୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ହୋଇଥିଲା । ଏହି ବନ୍ଦୋବସ୍ତ ନଳମାପ ବାଗ କଡ ଜରିବ ପଦ୍ଧତିରେ ହୋଇଥିଲା । ଏହା ପ୍ରଜାମାନଙ୍କ ପାଇଁ ୧୮୮୧ ମସିହାରୁ କାର୍ଯ୍ୟକାରୀ ହେଲା ।

ବନ୍ଦୋବସ୍ତ ପୂର୍ବରୁ ଶସ୍ୟ ଆଦାୟକାରୀ ପାଟମାନେ ବର୍ଷର ଯେ କୌଣସି ସମୟରେ ଶସ୍ୟ ଆଦାୟ ପାଇଁ ପ୍ରଜା ନିକଟକୁ ଯାଉଥିଲେ । ପ୍ରଜା ଘରୁ ଶସ୍ୟ ଶେଷହୋଇ ଯାଇଥିଲେ ହେଁ ତାକୁ ଜୁଲୁମ୍ ହେଉଥିଲା । ଫଳତଃ ସେ ଋଣକରି ଶସ୍ୟ ଫେଡ଼ୁଥିଲା । ପାଟମାନେ ଶସ୍ୟ ମାପକରି ନେବା ସମୟରେ ଅଧିକ ମଧ୍ୟ ନେଇଯାଉଥିଲେ । କିନ୍ତୁ ଏହି ବନ୍ଦୋବସ୍ତ ପରେ ରାଜସ୍ୱ ଆଦାୟର ଢାଞ୍ଚା ବଦଳିଗଲା । ୧୮୮୧ ମସିହାରୁ ସାଧାରଣ ପ୍ରଜା ମାନଙ୍କର ରାଜସ୍ୱର ତିନି ଚତୁର୍ଥାଂଶ ଅର୍ଥ ଆକାରରେ ଓ ଏକ ଚତୁର୍ଥାଂଶ ଶସ୍ୟ ଆକାରରେ ଆଦାୟ ହେବା ପାଇଁ ରାଜ-ସରକାର ନିଷ୍ପତ୍ତି ନେଲେ ।

କନ୍ତ ଖାଇକ ମାନଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ହୋଇଥିଲା । ଖାଇକ ମାନେ ରାଜସ୍ୱର ୭/୮ ଅଂଶ ଅର୍ଥ ଓ ୧/୮ ଅଂଶ ଶସ୍ୟ ଆକାରରେ କର ଦେବା ପାଇଁ ନିୟମ କରାଯାଇଥିଲା ।

ରାଜସ୍ୱ ଆଦାୟର ପଦ୍ଧତି ନୂତନ ଭାବେ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ପ୍ରଜାମାନେ ଏଥିରେ ସନ୍ତୁଷ୍ଟ ନଥିଲେ । ଗୋପବନ୍ଧୁ ପଟ୍ଟନାୟକ ଏହି ଶସ୍ୟମେଳି (Grain revolution) ର ନେତୃତ୍ୱ ନେଇଥିଲେ । ପ୍ରଜା ମାନେ ସମ୍ପୂର୍ଣ୍ଣଭାବେ ଶସ୍ୟ ଆଦାୟ ପ୍ରଥାର ବିଲୋପ ଚାହୁଁଥିଲେ । ସାଧାରଣ ପ୍ରଜା ଓ ଖାଇକ ମଧ୍ୟରେ ରାଜସ୍ୱ ଆଦାୟ ପ୍ରଥାର ପ୍ରଭେଦ ସୃଷ୍ଟି କରି ଠିକ୍ ଭାବରେ ରାଜସ୍ୱ ଆଦାୟ କରିନେବା ରାଜାଙ୍କର ଉଦ୍ଦେଶ୍ୟ ଥିଲେ ମଧ୍ୟ ସେଥିରେ ସଫଳ ହୋଇ ପାରିନଥିଲେ ।

୧୮୯୮ ଖ୍ରୀଷ୍ଟାବ୍ଦରେ ପୁନର୍ବାର ମେଳି ହେଲା । ରଣପୁର ରାଜ ଶାସନ ପ୍ରମାଦ ଗଣିଲା । ଏଣୁ ବ୍ରିଟିଶ କର୍ତ୍ତୃପକ୍ଷ ଏଥିରେ ହସ୍ତକ୍ଷେପ କରି ରାଜନୈତିକ ବିଭାଗ ଦ୍ୱାରା ମେଳି ସମ୍ବନ୍ଧରେ ତଦନ୍ତ କରାଇଲେ । ତଦନ୍ତର ଫଳାଫଳ ପରେ ଶସ୍ୟ ପରିବର୍ତ୍ତେ ଅର୍ଥ ଆକାରରେ ରାଜସ୍ୱ ଆଦାୟ ହେବା ପାଇଁ ସ୍ଥିର ହେଲା । ଫଳରେ ରାଜ୍ୟ ସରକାରଙ୍କର ଶସ୍ୟ ଆଦାୟ ବିଭାଗର ବିଲୋପ ଘଟିଲା ।

ରାଜାଙ୍କର ଦାଉମାନେ ରାଜାଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଦାଉମାନଙ୍କ ବ୍ୟବହାରରେ ପ୍ରଜାମାନେ ସନ୍ତୁଷ୍ଟ ନଥିଲେ । ଏଣୁ ଟ୍ରିବ୍ୟୁଟାରୀ ମହାଲର ସୁପରିଣ୍ଟେଣ୍ଡେଣ୍ଟଙ୍କ ନିର୍ଦ୍ଦେଶରେ ଦାଉଙ୍କ ପରିବର୍ତ୍ତେ ଦେୱାନ୍ ନିଯୁକ୍ତିର ବ୍ୟବସ୍ଥା ହୋଇଥିଲା । ତାଙ୍କ ସମୟରେ ବାବୁ ବ୍ରଜ ବଲ୍ଲଭ ପଟ୍ଟନାୟକ, ବାବୁ ଆନନ୍ଦଚନ୍ଦ୍ର ମହାନ୍ତି, ବାବୁ ଗୌରଚନ୍ଦ୍ର ସେନ୍, ବାବୁ ଗୌରପ୍ରସାଦ ଦାସ, ବାବୁ ଲୋକନାଥ ମିଶ୍ର ଓ ବାବୁ ଗୋପୀନାଥ ନାୟକ ପ୍ରମୁଖ କ୍ରମାନ୍ୱୟରେ ଦେୱାନ ଭାବରେ ନିଯୁକ୍ତି ପାଇଥିଲେ । ଦେୱାନ ଗୌରଚନ୍ଦ୍ର ସେନ୍‌ଙ୍କ ସମୟରେ ବହୁ ଜନ ହିତକର କାର୍ଯ୍ୟ ସମ୍ପାଦିତ ହୋଇଥିଲା । ଲୋକଙ୍କ ମୁହଁରୁ ତାଙ୍କର ଉଚ୍ଚ ପ୍ରଶଂସା ଏବେ ବି ଶୁଣିବାକୁ ମିଳେ ।

ରାଜା ବେଣୁଧରଙ୍କ ସର୍ବକନିଷ୍ଠ ଭାଇ ହରବର ମର୍ଦ୍ଦରାଜ ସାମନ୍ତ ଜଣେ ମଲ୍ଲ ଯୋଦ୍ଧା ରୂପେ ପରିଚିତ ଥିଲେ । ତାଙ୍କ ବଳଭରେ ଲୋଧାଟୁଆ

ଗ୍ରାମର ଖିମ ଭୋଳ ଅନ୍ୟ ଜଣେ ମଲ୍ଲଯୋଦ୍ଧା ରୂପେ ଖ୍ୟାତିଅର୍ଜନ କରିଥିଲେ । ରାଜାଙ୍କ କନିଷ୍ଠ ଭ୍ରାତା ଟିକାୟତ ରାମଚନ୍ଦ୍ର ଭ୍ରମରବର ରାୟ ସାମନ୍ତ ଜଣେ ଉଚ୍ଚକୋଟୀର ରାସ କବି ଥିଲେ । ସେ କାଳୀୟ ଦଳନ, ଦୁର୍ଜୟମାନ, ବିରହମାନ, ବାସକ ଶଯ୍ୟା ପ୍ରଭୃତି ବହୁ ରାସ ପୁସ୍ତକ ରଚନା କରିଥିଲେ ।

ରାଜା ବେଣୁଧରଙ୍କର ଚାରିଜଣ ରାଣୀ ଥିଲେ । ପ୍ରଥମ ରାଣୀ ବଡଖେମୁଣ୍ଡିର ମହାରାଜା ପିତାମ୍ବର ଦେବଙ୍କ ଜ୍ୟେଷ୍ଠ କନ୍ୟାଙ୍କ ବିୟୋଗ ହେତୁ ତାଙ୍କର ୨ୟ କନ୍ୟାକୁ ବିବାହ କରିଥିଲେ । ୨ୟ ରାଣୀଙ୍କର ପୁତ୍ର ସନ୍ତାନ ନହେବାରୁ ସେ ସମ୍ବଲପୁର ଚୌହାନ୍ ବଂଶର ରାଜା ପର୍ଶୁରାମ ସିଂହଙ୍କ କନ୍ୟାକୁ ବିବାହ କରିଥିଲେ । ୩ୟ ରାଣୀଙ୍କର ସନ୍ତାନ ନହେବାରୁ ଝାରସୁଗୁଡା ଜମିଦାର ଲଲ୍ ଫକୀର ସିଂହଙ୍କ କନ୍ୟାର ପାଣିଗ୍ରହଣ କରିଥିଲେ । ଫର୍ଦ୍ଧବନ ଧରି ରାଜାଙ୍କର ପୁତ୍ର ସନ୍ତାନ ନଥିବାରୁ ସେ ମଦନ ଗୋପାଳ ରାଜେନ୍ଦ୍ର ସାମନ୍ତଙ୍କ ପୌତ୍ର ତଥା ପର୍ଶୁରାମ ରାଜେନ୍ଦ୍ର ସାମନ୍ତଙ୍କ ପ୍ରଥମ ପୁତ୍ର ହରିହର ବିଦ୍ୟାଧର ସାମନ୍ତଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।

ରାଜା ବେଣୁଧରଙ୍କ ପରେ ହରିହର ବିଦ୍ୟାଧର ସାମନ୍ତ ରାଜା ହୋଇଥାନ୍ତେ । କିନ୍ତୁ ରାଜା ବେଣୁଧରଙ୍କ କନିଷ୍ଠା ରାଣୀଙ୍କ ଗର୍ଭରୁ କୃଷ୍ଣଚନ୍ଦ୍ର ସିଂହଦେଓ ଜନ୍ମଗ୍ରହଣ କଲେ । ଫଳରେ ସେ ପୋଷ୍ୟପୁତ୍ର ହରିହରଙ୍କୁ ଯଥେଷ୍ଟ ଧନ ଓ ଭୂସମ୍ପତ୍ତି ଖଞ୍ଜା ଆକାରରେ ପ୍ରଦାନ କରି ପୁତ୍ର କୃଷ୍ଣଚନ୍ଦ୍ରଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଇଥିଲେ ।

ରାଜା ବେଣୁଧରଙ୍କ କନିଷ୍ଠା ରାଣୀଙ୍କ ଦ୍ୱାରା ଏକ ମନ୍ଦିର ନିର୍ମିତ ହୋଇଥିଲା । ଏଥିରେ କୁଞ୍ଜବିହାରୀ, ବ୍ରଜବିହାରୀ ଓ ରାଧାକାନ୍ତ ଦେବ ଠାକୁର ପ୍ରତିଷ୍ଠିତ ହୋଇଥିଲେ । ରାଜା ରଣପୁରସ୍ଥ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ମଧ୍ୟରେ ଥିବା ପାକଶାଳାକୁ ପକ୍କା ଘରରେ ପରିଣତ କରାଇଥିଲେ । ପୁରୁଣା ବସନ୍ତ ଗ୍ରାମଠାରେ ଭୂତନାଥ ମହାଦେବ ମନ୍ଦିର ନିର୍ମାଣ କରାଇଥିଲେ ।

# ଚତୁର୍ଥ ଅଧ୍ୟାୟ

## ରାଜା ଶ୍ରୀ କୃଷ୍ଣଚନ୍ଦ୍ର ସିଂହଦେଓ
## ବୀରବର ବଜ୍ରଧର ନରେନ୍ଦ୍ର ମହାପାତ୍ର
## ଖ୍ରୀ ୧୮୯୯ ୧୯୪୫

ରାଜା କୃଷ୍ଣଚନ୍ଦ୍ରଙ୍କ ରାଜତ୍ୱକାଳ ଭାରତ ସ୍ୱାଧୀନତା ସଂଗ୍ରାମର କାହାଣୀ । ଏହି ସମୟ ହେଉଛି ଉଭୟ ରାଜା ଓ ପ୍ରଜାଙ୍କର ଜୀବନର ନାନା ଘାତ-ପ୍ରତିଘାତ, ଆଶା-ଅଭିଳାଷ, ହର୍ଷ ବିଷାଦ, ସ୍ୱପ୍ନ ଓ ଅନୁଭୂତିର ରସାଳ ପ୍ରଦାନକାରୀ ଘଟଣା ପ୍ରବାହ ।

ରାଜା କୃଷ୍ଣଚନ୍ଦ୍ର ଜଣେ ଧର୍ମପରାୟଣ ରାଜା ରୂପେ ସୁବିଦିତ । ସେ ନିଜ ନାମରେ ପ୍ରତିଷ୍ଠା କରିଥିଲେ କୃଷ୍ଣଚନ୍ଦ୍ରପୁର ଗ୍ରାମ ।

ରଣପୁର ରାଜ୍ୟର ଦକ୍ଷିଣ ଦିଗରେ ଗୃନ୍ଦପୁର ଗ୍ରାମ ଅବସ୍ଥିତ । ଏଠାରୁ ମାତ୍ର ତିନି କି. ମି. ଦୂର ବ୍ୟବଧାନରେ ଚିଲିକାର ନୀଳ ଜଳରାଶି ଦୃଷ୍ଟିଗୋଚର ହୁଏ । କବିବର ରାଧାନାଥଙ୍କ ଭାଷାରେ —

"ଉତ୍କଳ କମଳା ବିଳାସ ଦୀର୍ଘିକା
ମରାଳ ମାଳିନୀ ନୀଳାମ୍ବୁ ଚିଲିକା
ଉତ୍କଳର ତୁହି ଚାରୁ ଅଳଙ୍କାର
ଉତ୍କଳ ଭୁବନେ ଶୋଭାର ଭଣ୍ଡାର ।"

ରାଜା କୃଷ୍ଣଚନ୍ଦ୍ର ଚିଲିକାର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିଲେ । ସେ ପ୍ରତ୍ୟେକ ଅପରାହ୍ନରେ ଚିଲିକାର ସନ୍ଦର୍ଶନ କରିବା ଓ ଗ୍ରୀଷ୍ମ କାଳରେ ଏହା ସୁଶୀତଳ ପବନ ଉପଭୋଗ କରିବା ନିମନ୍ତେ ଗୃନ୍ଦପୁରଠାରେ ଏକ ପ୍ରାସାଦ ନିର୍ମାଣ କରାଇଥିଲେ । ଏହି ରାଜପ୍ରାସାଦ ଅଧୁନା "ବସନ୍ତ ମଞ୍ଜରୀ ସ୍ୱାସ୍ଥ୍ୟନିବାସ" ରୂପେ ଗଢ଼ି ଉଠିଛି । ଏହି ରାଜ ପ୍ରାସାଦରୁ ଏକ ଫର୍ଲଙ୍ଗ ଦୂରରେ ଯୁବରାଣୀ ବସନ୍ତମଞ୍ଜରୀ ଦେବୀଙ୍କ ଦ୍ୱାରା ଏକ କୋଠାଘର ନିର୍ମିତ ହୋଇଥିଲା । ଏହା 'ରାଣୀକୋଠି' ରୂପେ ପରିଚିତ ।

ରାଜା କୃଷ୍ଣଚନ୍ଦ୍ରଙ୍କ ଦ୍ୱାରା ରଣପୁର ଗଡ଼ରେ ପଞ୍ଚୁଦୋଳ ଯାତ୍ରା ଆରମ୍ଭ ହୋଇଥିଲା । ୧ ୮ ଟି ଦୋଳକୁ ନେଇ ଅନୁଷ୍ଠିତ ଏହି ଯାତ୍ରା ଅତି

ଆଡମ୍ବର ସହକାରେ ପାଳିତ ହେଉଥିଲା । ଓଡିଶାର କୌଣସି ଦୋଳ ଯାତ୍ରାରେ ଏତେ ସଂଖ୍ୟକ ଦୋଳ ସମାଗମ ହୁଏନାହିଁ । ତାଙ୍କ ସମୟରେ ବୈଶାଖ ମାସରେ ରଣପୁର ଗଡରେ ଝାମୁଯାତ୍ରା ପର୍ବ ଆରମ୍ଭ ହୋଇଥିଲା । ଏହା ବ୍ୟତୀତ ଚମ୍ପକ ଦ୍ୱାଦଶୀ ଦିନ ଆତସବାଜି ପ୍ରତିଯୋଗିତା ଅତି ଚିତ୍ତାକର୍ଷକ ଥିଲା ।

ରାଜା କୃଷ୍ଣଚନ୍ଦ୍ରଙ୍କ ସମୟରେ ଦଶହରା ପର୍ବ ମହା ସମାରୋହରେ ପାଳିତ ହେଉଥିଲା । ରଣପୁରର ଅନୁଷ୍ଠିତ ହେଉଥିବା 'ଦଶହରା ପର୍ବ' ସମ୍ବନ୍ଧରେ କବି ଗୋପୀନାଥ ସିଂହଦେଓ ନିମ୍ନମତେ ରଚନା କରିଛନ୍ତି ।

"ନଦେଖିବା ଲୋକ କାହୁଁ ବା ବୁଝିବ ଦଶହରା ପର୍ବ ଉତ୍ସବ
ସାଜେ ବୀର ବେଶରେ ମହାରାଷ୍ଟ

ଅଣପୁରକୁ ସେଦିନ ଫିଟିଯାଏ ପରେ ତରାଟ କପାଟ, ବିଦ୍ରୁପେ
ଗୃଙ୍ଗ ଚଡ଼ ଚଡ ଶବ୍ଦ ସଙ୍ଗତେ ନଳ ତଡକ ଚକତେ ମିଶନ୍ତେ
କରାଳୀ-କାଳ-ବ୍ୟାଳ କାଳୀ ରଞ୍ଜନ ରଟ ମଟ ପ୍ରାୟ ପ୍ରତେ" ।୧୨।

ଦଶହରା ପର୍ବ ଉପଲକ୍ଷେ ସାତଥର ତୋପଧ୍ୱନି ହୁଏ । ଏହି ତୋପଧ୍ୱନି ଶୁଣିବା ପରେ ରାଜ୍ୟର ଜନସାଧାରଣ ଶୁଭ ଅନୁକୂଳ କରିଥାନ୍ତି ।

ରାଜା କୃଷ୍ଣଚନ୍ଦ୍ର ରଣପୁରସ୍ଥ ଶ୍ରୀ ଜଗନ୍ନାଥ ମନ୍ଦିରକୁ ଘୋଡା ପାବଚ୍ଛ ଓ ମୁଖଶାଳା ମଧ୍ୟରେ ପତିତ ପାବନ ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ । ସେ କମଳେଶ୍ୱର ଓ ହରଚଣ୍ଡୀଙ୍କ ମନ୍ଦିରରେ ମଣ୍ଡପ ତୋଳାଇଥିଲେ ।

ତତ୍କାଳୀନ ରଣପୁର ଗଡ ଓ ରାଜ-ସୁନାଖଳାରେ ଅନୁଷ୍ଠିତ ବସନ୍ତ ରାସ ଓ ଶରତ ରାସ ଓଡିଶା ବିଖ୍ୟାତ ଥିଲା । ଏହି ରାସ ଉତ୍ସବ ଅତି ଆଡମ୍ବର ସହକାରେ ପାଳିତ ହେଉଥିଲା ।

**କବିଚନ୍ଦ୍ର ବେଣୁଧର**— କବିଚନ୍ଦ୍ର ବେଣୁଧର ପଟ୍ଟନାୟକଙ୍କ ରାସ ସଙ୍ଗୀତ ରଣପୁରରେ ପ୍ରସିଦ୍ଧି ଲାଭ କରିଥିଲା । ସେ ମାନ ମାଧୁରୀ, ସଙ୍ଗୀତ କଲ୍ଲୋଳ, ସଙ୍ଗୀତ କଳାନିଧି, କୃଷ୍ଣକାଳୀ, ମାନ ଭଞ୍ଜନ, ବାଲ୍ୟଲୀଳା, ବିଦଗ୍ଧ ମାଧବ, 'ଚନ୍ଦ୍ରାବଳୀ ବିଳାସ' ପ୍ରଭୃତି ବହୁ ରାସ ସଙ୍ଗୀତ ପୁସ୍ତକ ରଚନା କରିଥିଲେ । ଏହା ବ୍ୟତୀତ ବେଣୁଧର ପଦ୍ୟାବଳୀ, ଅଗ୍ନି ପୁରାଣ, ମହାଲକ୍ଷ୍ମୀ ପୁରାଣ, ଜଗନ୍ନାଥ ପୁରାଣ, ଗୀତ କଳ୍ପତରୁ, ଗୌରଚରଣ ଗୀତାବଳୀ, ରଘୁନାଥଙ୍କ

ନଶୀଣ ଓ ମଣିନାଗ ଦୁର୍ଗାଙ୍କ ଜଣାଣ ଆଦି ବହୁ ଗ୍ରନ୍ଥ ପ୍ରକାଶ କରିଛନ୍ତି । ତାଙ୍କର ଶହ ଶହ ପାଣ୍ଡୁଲିପି ଅଦ୍ୟାପି ଅପ୍ରକାଶିତ ଅବସ୍ଥାରେ ରହିଛି । ସେ ରଣପୁର ରାଜ୍ୟର ବ୍ୟଞ୍ଜନ ଗାଡଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କବି ବେଣୁଧର ରଣପୁର ରାଜା କୃଷ୍ଣଚନ୍ଦ୍ରଙ୍କ ଠାରୁ କବିଚନ୍ଦ୍ର ଉପାଧି ପାଇଥିଲେ । କବିଚନ୍ଦ୍ର ବେଣୁଧର ପଟ୍ଟନାୟକ ପରେ ମଥୁରା, ବୃନ୍ଦାବନ, ନଦିଆ ନବଦ୍ୱୀପ ଓ ଶ୍ରୀକ୍ଷେତ୍ରରେ ବହୁବର୍ଷ ଅତିବାହିତ କରି ଶେଷ ଜୀବନ କଟକ ଜିଲ୍ଲା ଟାଙ୍ଗୀ ଥାନା କୋଟ ସାହି ମଠର ମହନ୍ତ ରୂପେ ଅତିବାହିତ କରିଥିଲେ । ମହନ୍ତ ହେବାପରେ ତାଙ୍କ ମୂଳନାମ ପରିବର୍ତ୍ତିତ ହୋଇ ସେ ମହନ୍ତ ବୈଷ୍ଣବ ଚରଣ ଦାସ ଗୋସ୍ୱାମୀ ରୂପେ ପରିଚିତ ହୋଇଥିଲେ । ତାଙ୍କ ରଚିତ ରାସ ସଙ୍ଗୀତ ବ୍ୟତୀତ ସାନପଦର ନିବାସୀ ଡିଣ୍ଡିକ ଶ୍ରୀଚନ୍ଦନଙ୍କ ବସନ୍ତ ରାସ ଓ ରାମଚନ୍ଦ୍ର ଭ୍ରମରବରର ସାମନ୍ତଙ୍କ ରାସ ସଙ୍ଗୀତ ରଣପୁରରେ ଅଭିନୀତ ହେଉଥିଲା ।

**ନରେନ୍ଦ୍ର ଥିଏଟର**—ରାଜା କୃଷ୍ଣଚନ୍ଦ୍ର କଳାପ୍ରିୟ ଥିଲେ । ସେ ରଣପୁରରେ 'ନରେନ୍ଦ୍ର ଥିଏଟର' ନାମକ ଏକ ସଂସ୍ଥା ଗଠନ କରିଥିଲେ । ଏଥିରେ ଶ୍ରୀ ବୃନ୍ଦାବନ ବିହାରୀ ଦାଶ ଶର୍ମା ଥିଏଟର ମାଷ୍ଟର ରୂପେ କାର୍ଯ୍ୟ କରୁଥିଲେ । ଶ୍ରୀ ଦାଶ ଶର୍ମା ୧୯.୯ ମସିହାରେ 'ସଙ୍ଗୀତ ଜ୍ଞାନ ଭଣ୍ଡାର' ଓ ତା ୧୯-୯-୧୯୨୭ ମସିହାରେ 'ଗୀତବାଦ୍ୟ ତରଙ୍ଗ' ନାମକ ଦୁଇଖଣ୍ଡ ପୁସ୍ତକ ରଚନା କରିଥିଲେ । ଏହା ରାଜା କୃଷ୍ଣଚନ୍ଦ୍ର ପ୍ରକାଶ କରିଥିଲେ । 'ଗୀତବାଦ୍ୟ ତରଙ୍ଗ' ପୁସ୍ତକରେ ତବଲାର ବୋଲ ଓ ଗୀତର ସ୍ୱରଲିପି ସମ୍ବନ୍ଧରେ ବର୍ଣ୍ଣନା ହୋଇଛି । 'ସଙ୍ଗୀତ ଜ୍ଞାନ ଭଣ୍ଡାର' ପୁସ୍ତକରେ ସଙ୍ଗୀତର ରାଗ ରାଗିଣୀ, ତାଳ ଲୟ ଓ ସଙ୍ଗୀତରେ ବିଭିନ୍ନ ପ୍ରକାର ଯନ୍ତ୍ର ବଜାଇବାର ସୋପାନ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା ହୋଇଛି ।

ରାଜା କୃଷ୍ଣଚନ୍ଦ୍ର ରଣପୁର ରାଜ୍ୟର ବିଭିନ୍ନ ଗ୍ରାମରେ ଥିଏଟରମାନ ଗଠନ କରିବା ପାଇଁ ପ୍ରେରଣା ପ୍ରଦାନ କରୁଥିଲେ । ତତ୍କାଳୀନ ଓଡିଶାର ବିଭିନ୍ନ ପ୍ରାନ୍ତରୁ ନାଟ୍ୟଦଳ ମାନ ରଣପୁର ଆସି ନାଟ୍ୟ ପରିବେଷଣ କରି ରାଜାଙ୍କ ଠାରୁ ପୁରସ୍କୃତ ହେଉଥିଲେ । ସେ ସଙ୍ଗୀତ କଳାର ମଧ୍ୟ ପୃଷ୍ଠ ପୋଷକତା କରିଥିଲେ । ତଦାନ୍ତୀନ ଗଞ୍ଜାମ ଜିଲ୍ଲାର ଶକଟି ସଙ୍ଗୀତ କଳାର ଏକ ପ୍ରଧାନ କେନ୍ଦ୍ର ଥିଲା । ରାଜା କୃଷ୍ଣଚନ୍ଦ୍ର ଶକଟିର ରାଜା ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବଙ୍କ ଭଗ୍ନୀ ଶ୍ରୀମତୀ ରାମେଶ୍ୱରୀ ଦେବୀଙ୍କୁ ବିବାହ କରିଥିବାରୁ ଶକଟି ସଙ୍ଗୀତ କଳାର ପ୍ରଭାବ ରଣପୁରରେ ପ୍ରତିଫଳିତ ହୋଇଥିଲା ।

ଟକଟିରୁ ପ୍ରତିବର୍ଷ ସଙ୍ଗୀତ ଦଳ ରଣପୁର ଆସି ସଙ୍ଗୀତ ପରିବେଷଣ କରୁଥିଲେ ।

**ବନ୍ଧ ଓ ସଡ଼କ ନିର୍ମାଣ –** ରାଜା କୃଷ୍ଣଚନ୍ଦ୍ରଙ୍କ ସମୟରେ ମଲାଗୁଣି ପୋଖରି, ଅଦ୍ଧାରି ବନ୍ଧ, ଲୋଚନ ସାଗର, ପାଟଝର ଓ ଚଣ୍ଡିଝର ବନ୍ଧ ନିର୍ମାଣ ହୋଇଥିଲା । ପାଟଝର ବନ୍ଧ ଯୋଗୁଁ ମାଳାଞ୍ଚଳ ଓ ଚଣ୍ଡିଝର ବନ୍ଧଯୋଗୁଁ ଲେମ୍ବୋଡ଼ ପ୍ରଭୃତି ଗ୍ରାମ ଜଳସେଚିତ ହୋଇ ପାରୁଥିଲା । ତାଙ୍କ ସମୟରେ କରଡ଼ାପଲ୍ଲି-ଶଙ୍ଖଯୋଡ଼ ସଡ଼କ, ସୁର୍କାବାଡ଼ ଶାରଙ୍ଗଧର ପୁର ସଡ଼କ ନିର୍ମିତ ହୋଇଥିଲା । ଏହା ବ୍ୟତୀତ ରଣପୁର ଗଡ଼ରେ ଏକ ଗୋଶାଳା, ଵି. ଏନ୍. କ୍ଲବ, ଅନାଥାଶ୍ରମ ଆଦି ନିର୍ମିତ ହୋଇଥିଲା ।

ରାଜା ବେଦଜ୍ଞ ଥିଲେ । ହୋମ ଯଜ୍ଞାଦି କାର୍ଯ୍ୟରେ କୌଣସି ବ୍ରାହ୍ମଣ ମନ୍ତ୍ରୋଚ୍ଚାରଣରେ ତ୍ରୁଟି କରୁଥିଲେ ତାହା ସେ ଜାଣି ପାରୁଥିଲେ । ଏଣୁ କର୍ମ-କର୍ମାଣି ସିଦ୍ଧ ବ୍ରାହ୍ମଣମାନେ ହିଁ ରାଜାଙ୍କର ହୋମଯଜ୍ଞକୁ ନିମନ୍ତ୍ରିତ ହେଉଥିଲେ । ରାଜା ବ୍ରାହ୍ମଣମାନଙ୍କୁ ପାଟଯୋଡ଼ ଠାରୁ ଆରମ୍ଭ କରି ବହୁ ମୂଲ୍ୟବାନ ପଦାର୍ଥ ମାନ ଉପହାର ସ୍ୱରୂପ ପ୍ରଦାନ କରୁଥିଲେ । ରାଜା ବ୍ରାହ୍ମଣ ପିଲିମାନଙ୍କୁ ପ୍ରତିଦିନ ଏକ ବାଳ ଭୋଜର ବ୍ୟବସ୍ଥା କରି ଖାଦ୍ୟ ପରିବେଷଣ ଠିକ୍ ରୂପେ ହେଉଛି କି ନାହିଁ ତଦନ୍ତ କରୁଥିଲେ ।

ସେ ପୁରୀର ଗଜପତି ୪ର୍ଥ ରାମଚନ୍ଦ୍ର ଦେବଙ୍କ ଠାରୁ ଶାଢୀ ଓ ଛତ୍ର ହାସ ଉପହାର ପାଇଥିଲେ । ପୁରୀରେ ରଣପୁର ରାଜାଙ୍କର ଏକ ପକ୍କା ଘର ପୁରୀ ଜିଲ୍ଲା ସ୍କୁଲ ସମ୍ମୁଖରେ ଥିଲା । ଏହା ରଣପୁର କୋଠିରୂପେ ପରିଚିତ । ରାଜା ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଦର୍ଶନରେ ଆସି ଏହି କୋଠିରେ ଅବସ୍ଥାନ କରୁଥିଲେ । ଏହା 'ରଣପୁର କୋଠି' ରୂପେ ପରିଚିତ । ସମ୍ପ୍ରତି ଏହା ବିକ୍ରି ହୋଇ ଯାଇଛି । କେବଳ କଲିକତା ଓ କଟକ ଠାରେ ରଣପୁର ରାଜାଙ୍କର କୋଠିମାନ ଅଛି ।

**ଅନୁଗୃହୀତ ପ୍ରଜା –** ରାଜାଙ୍କର କେତେକ ଅନୁଗୃହୀତ ପ୍ରଜା ଥିଲେ । ସେମାନେ କର୍ତ୍ତେ ଜଣ ମଧ୍ୟରେ ରାଜାଙ୍କୁ ପ୍ରଭାବିତ କରି ବିଶେଷ ଲାଭବାନ୍ ହେଉଥିଲେ । ଯଦୁପୁର ଗ୍ରାମର ଜନୈକ ସାଧାରଣ ପ୍ରଜା ସ୍ୱର୍ଗତ ଅଗାଧୁ ରାଉତରାୟ ରାଜା କୃଷ୍ଣଚନ୍ଦ୍ରଙ୍କ ଅନୁଗ୍ରହ ଲାଭ କରି ରାଜ୍ୟର ପ୍ରଧାନ ଧନୀ ତଥା ପ୍ରଭାବଶାଳୀ ବ୍ୟକ୍ତି ହୋଇ ପାରିଥିଲେ । ତାଙ୍କ ପାଇଁ ରାଜାଙ୍କ ପକ୍ଷରୁ କୋଠା

ଘର ନିର୍ମିତ ହୋଇଥିଲା । ରଣପୁର ରାଜ୍ୟରେ ସେ ସମୟରେ ଛଅଗୋଟି ସ୍ଥାନକୁ ଟେଲିଫୋନ୍ ଲାଇନ୍ ଯାଇଥିଲା । ଏହି ସ୍ଥାନଗୁଡିକ ହେଲା ରାଜାଙ୍କର ରଣପୁର ଓ ଗୃନ୍ଦପୁର ରାଜପ୍ରାସାଦ ଏବଂ ସଦୁପୁର ଅଗାଧୁ ରାଉତରାୟଙ୍କ ବାସଭବନ । ରାଜାଙ୍କ ସଙ୍ଗେ ଆଳାପ ଆଲୋଚନା କରିବା ପାଇଁ ସଦୁପୁର ଶ୍ରୀ ରାଉତରାୟଙ୍କ ଘରକୁ ରାଜକୋଷରୁ ଅର୍ଥ ବ୍ୟୟ ହୋଇ ଟେଲିଫୋନ୍ ଲାଇନ୍ ଯାଇଥିଲା । ସେ ରାଜାଙ୍କର ଧର୍ମପୁତ୍ର ରୂପେ ପରିଚିତ ଥିଲେ । ରାଜାଙ୍କ ପାଇଁ ବିଭିନ୍ନ ଗ୍ରାମରୁ ଆସୁଥିବା ଭେଟି ଦ୍ରବ୍ୟମାନ ତାଙ୍କ ଘରକୁ ପଠା ଯାଉଥିଲା ।

ଅଗାଧୁ ରାଉତରାୟଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ବ୍ୟକ୍ତି ରାଜାଙ୍କର ଅତି ପ୍ରିୟପାତ୍ର ହୋଇ ବହୁ ସୁବିଧା ସୁଯୋଗର ଅଧିକାରୀ ହୋଇଥିଲେ । ସେମାନେ ହେଲେ ଏକତାଳ ଗ୍ରାମର ୬ ଲିଙ୍ଗରାଜ ପାଇକରାୟ ଓ କନ୍ଦ-ନୟାଗଡ଼ ଗ୍ରାମର ୬ ରାଜନ ବଳବନ୍ତରାୟ ।

**ଜଗନ୍ନାଥ ଦେଓ୍ୱାନ -** ରାଜା କୃଷ୍ଣଚନ୍ଦ୍ରଙ୍କ ଶାସନଭାର ଗ୍ରହଣ ସମୟରେ ଗୋପୀନାଥ ନାୟକ ଦେଓ୍ୱାନ ଥିଲେ । ତାଙ୍କ ପରେ ଛଗିରିଆ ନିବାସୀ ରଘୁନାଥ ପଟ୍ଟନାୟକ ଦେଓ୍ୱାନ୍ ହୋଇଥିଲେ । ସେ ଜଣେ ଉତ୍ତମ ଦେଓ୍ୱାନ୍ ରୂପେ ପରିଚିତ । କିନ୍ତୁ ସେ କାର୍ଯ୍ୟରୁ ଅବସର ଗ୍ରହଣ କରିବାରୁ ତାଙ୍କର ପେସ୍କାର ରୂପେ କାର୍ଯ୍ୟ କରୁଥିବା ବ୍ରହ୍ମଗିରି ଥାନା ବେଣ୍ଟପୁର ନିବାସୀ ଜଗନ୍ନାଥ ମହାନ୍ତି ରାଜାଙ୍କୁ ତୋଷାମୋଦ କରି ଦେଓ୍ୱାନ୍ ପଦ ଲାଭ କରିଥିଲେ । ତାଙ୍କର ଯୋଗ୍ୟତା ମ.ଇ ୯ମ ଶ୍ରେଣୀ ପର୍ଯ୍ୟନ୍ତ ହୋଇଥିଲେ ମଧ୍ୟ ରାଜାଙ୍କ ସୁପାରିଶ ଯୋଗୁଁ ଦେଓ୍ୱାନ୍ ପଦ ପ୍ରାପ୍ତ ହୋଇଥିଲେ । ସେ ଶୋଷଣ କରିବାରେ ପାରଙ୍ଗମ ଥିଲେ । ସେ ପ୍ରଜା ଆନ୍ଦୋଳନର ମୂଳ କାରଣ ଥିଲେ ।

ପ୍ରଜା ମାନଙ୍କର ଗଛ ଓ ମାଛ ଉପରେ ଅଧିକାର ନଥିଲା । କିନ୍ତୁ ସମସ୍ତ ସରକାରୀ ଜାଗାରେ ଥିବା ଫଳନ୍ତ ଗଛ ଯଥା — ଆମ୍ବ, ପଣସ ନଡ଼ିଆ ଏବଂ ପୋଖରୀ ମାନଙ୍କର ରକ୍ଷଣା ବେକ୍ଷଣ ପ୍ରଜାମାନଙ୍କ ଉପରେ ନ୍ୟସ୍ତ ଥିଲା । ଅଥଚ ଗାଁ ତୋଟାର ସମସ୍ତ ଆମ୍ବ, ପଣସ, ନଡ଼ିଆ ଓ ପୋଖରୀ ମାନଙ୍କର ମାଛ ରାଜାଙ୍କ ଉଆସ ପର୍ଯ୍ୟନ୍ତ ଆସୁଥିଲା । ତାହା ରାଜାଙ୍କର ଅନୁଗୃହୀତ ପ୍ରଜା ଓ ରାଜ କର୍ମଚାରୀମାନେ ବାଣ୍ଟି ନେଉଥିଲେ ।

**ବେଠି ଓ ଭେଟି** — ରଣପୁର ରାଜ୍ୟରେ ପ୍ରଜାଙ୍କ ବେଠିରେ ସମସ୍ତ କାର୍ଯ୍ୟ ହେଉଥିଲା । ସେତେବେଳେ ରଣପୁର ରାଜ୍ୟର ଯେତେ ରାସ୍ତାଘାଟ, ପୋଲ ପ୍ରଭୃତି ନିର୍ମାଣ ହୋଇଥିଲା ତାହା ପ୍ରଜାମାନଙ୍କ ବେଠିରେ ହୋଇଥିଲା । ରାଜା ମଉଜ ମଜଲିସ୍ ପାଇଁ ଶିକାରକୁ ଗଲେ ପ୍ରଜାମାନେ ବେଠିରେ ଶିକାର କାମରେ ସାହାଯ୍ୟ କରୁଥିଲେ । ସଡକ ଓ ପାଣିଧି ବେଠି ବ୍ୟତୀତ ଘର ଛାଉଣି ଓ ଛପର ଏବଂ ରଥ ବେଠି ଆଦି ହେଉଥିଲା । ବେଠିଆ ମାନଙ୍କୁ ପ୍ରବଳ ଭୋକ ସମୟରେ ଜଳଖିଆ ବାବଦରେ କିଛି ଅର୍ଥ ରାଜାଙ୍କ ପକ୍ଷରୁ ପ୍ରଦାନ ହେଉଥିଲା । କିନ୍ତୁ ତାହା ଦେଓ୍ୱାନ୍ ଓ ଦାରୋଗା ତୋଷରଫାତ କରୁଥିଲେ । ରାଜା ବୃଦ୍ଧାବସ୍ଥାରେ ବେଗାହାନ୍ତ ହୋଇ ଯାଇଥିବାରୁ କର୍ମଚାରୀମାନଙ୍କର ଦୋଷତ୍ରୁଟି ଜାଣି ପାରୁନଥିଲେ କିମ୍ବା ଜାଣୁଥିଲେ ମଧ୍ୟ ତାହା ସୁଧାରି ପାରୁ ନଥିଲେ । କର୍ମଚାରୀ ମାନଙ୍କର ଅନ୍ୟାୟ ଅତ୍ୟାଚାର ଯୋଗୁଁ ପ୍ରଜାମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିଲା । ଯେଉଁଠାରେ ଅତ୍ୟାଚାର ସେହିଠାରେ ହିଁ ପ୍ରତିରୋଧ ଜନ୍ମଲାଭ କରିଥାଏ । ଯେଉଁଠାରେ ପରାଧୀନତା ସେହିଠାରେ ହିଁ ବିଦ୍ରୋହର ଦୁର୍ବାର ଶକ୍ତି ମୁଣ୍ଡଟେକି ଉଠିଥାଏ । ଏଣୁ ରାଜ ଶାସନ ବିରୁଦ୍ଧରେ ବିଦ୍ରୋହୀ ଦିବାକର ପରିଡ଼ା ଓ ରଘୁନାଥ ମହାନ୍ତି ପ୍ରମୁଖଙ୍କ ନେତୃତ୍ୱରେ ପ୍ରଜା ଆନ୍ଦୋଳନ ସୂତ୍ରପାତ ହେଲା । ଏହା "ସ୍ୱାଧୀନତା ଆନ୍ଦୋଳନ" ଶୀର୍ଷକ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

## ସ୍ୱାଧୀନତା ଆନ୍ଦୋଳନ

ପୂର୍ବତନ ଦେଶୀୟ ରାଜ୍ୟ ମାନଙ୍କର ମିଶ୍ରଣରେ ବିଶାଳ ଉତ୍କଳର ଜନ୍ମ । ଏକ ସମୟରେ ଏହି ରାଜ୍ୟଗୁଡିକୁ ଅନ୍ଧାରୀ-ମୂଳକ କୁହାଯାଉଥିଲା । ବ୍ରିଟିଶ ଶାସକର ବାହୁ ଛତ୍ରତଳେ ରାଜ୍ୟଗୁଡିକର ରାଜନ୍ୟବର୍ଗ ସାର୍ବଭୌମ କ୍ଷମତାର ଅଧିକାରୀ ଥିଲେ । ଅନ୍ୟାୟ ଅତ୍ୟାଚାର ଓ ଦମନ ଲୀଳାରେ ରାଜତନ୍ତ୍ର ତିଷ୍ଠି ରହିଥିଲା । ଏହି ଅନ୍ଧାରୀ ଶାସନ ବିରୁଦ୍ଧରେ କେତେକ ରାଜ୍ୟରେ ଜନ ଆନ୍ଦୋଳନ ସଂଗଠିତ ହୋଇଥିଲା । ତନ୍ମଧ୍ୟରେ ରଣପୁର ରାଜ୍ୟର ଜନ ଅସନ୍ତୋଷ ବିଦ୍ରୋହର ରୂପ ନେଇ ୧୯୩୮ ମସିହାର ଶେଷାର୍ଦ୍ଧରେ ଭୟଙ୍କର ହୋଇଥିଲା । ଫଳରେ ଆନ୍ଦୋଳନ ଦମନ ନିମନ୍ତେ ଗଡଜାତ ସମୂହର ପଲିଟିକାଲ ଏଜେଣ୍ଟ ମେଜର ବଜେଲଗେଟ୍ ୧୯୩୯ ମସିହା ଜାନୁୟାରୀ ୫ ତାରିଖ ଦିନ ରଣପୁରରେ ପଦାର୍ପଣ କଲେ । କିନ୍ତୁ ଘଟଣା ଚକ୍ରରେ

ସେ ବିଦ୍ରୋହୀମାନଙ୍କ ଦ୍ୱାରା ନିହତ ହେଲେ । ଏହା ଥିଲା ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ଅଭୂତପୂର୍ବ ଘଟଣା । ଏହାର କାରଣ ହେଉଛି, ପୂର୍ବରୁ ଘଟିଥିବା ଭାରତରେ ସ୍ୱାଧୀନତା ସଂଗ୍ରାମରେ ବ୍ରିଟିଶ ସୈନ୍ୟବାହିନୀର କୌଣସି ଉଚ୍ଚ ପଦସ୍ଥ ଅଫିସରଙ୍କୁ ହତ୍ୟା କରାଯାଇ ନଥିଲା ।

ବେଜାଲଗେଟ୍ ହତ୍ୟା ଘଟଣା ଭାରତବ୍ୟାପୀ ପ୍ରଜା ଆନ୍ଦୋଳନ ତଥା ସବୁ ରାଜନୈତିକ ମହଲରେ ପ୍ରତିଫଳିତ ହୋଇଥିଲା, ଏପରି କି ଇଂଲଣ୍ଡ ପାର୍ଲାମେଣ୍ଟରେ ଏହା ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଉକ୍ତ ହତ୍ୟାକାଣ୍ଡ ଅଭିଯୋଗରେ ଫିରିଙ୍ଗି ଶାସନର କୋପଭାଜନ ହୋଇ ବିଦ୍ରୋହର ନେତା ଦିବାକର ପରିଡ଼ା ଓ ରଘୁନାଥ ମହାନ୍ତିଙ୍କୁ ଫାଶୀଖୁଣ୍ଟରେ ଝୁଲିବାକୁ ପଡ଼ିଥିଲା ।

ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ରଣପୁରର ଏହି ଗୌରବମୟ ସ୍ମୃତି ବର୍ତ୍ତମାନର ଜନତା ମନରେ ନୂତନ ଶିହରଣ ଆଣେ । ସ୍ୱାଧୀନତା ଆନ୍ଦୋଳନରେ ରଣପୁରର ଭୂମିକା ଗୌରବମୟ ତଥା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଅତି ସଂକ୍ଷିପ୍ତ ଭାବରେ ଏହା ବର୍ଣ୍ଣନା କରୁଛି । ପୂର୍ବରୁ ଏ ସମ୍ପର୍କରେ ମୋ ଦ୍ୱାରା ଲିଖିତ "ରଣପୁର ବିଦ୍ରୋହ" ପୁସ୍ତକରେ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଅଛି ।

ରଣପୁର ରାଜ୍ୟରେ ପଲିଟିକାଲ ଏଜେଣ୍ଟଙ୍କୁ ହାତବାରସୀ କରି ପ୍ରଜାମାନଙ୍କ ଉପରେ ଅନ୍ୟାୟ ଅତ୍ୟାଚାର ହୋଇଥିଲା । ରଜା, ପ୍ରଜାର ଭାଗ୍ୟ ବିଧାତା ଓ ସର୍ବମୟ କର୍ତ୍ତା ଥିଲେ । ପ୍ରଜାମାନେ କଥାକଥାକେ ରଜାଙ୍କୁ "ଧନ ଜୀବନ ଗୋସେଇଁଙ୍କର" ବୋଲି ସମ୍ବୋଧନ କରୁଥିଲେ । ରଜାର ଇଚ୍ଛା ହିଁ ରାଜ୍ୟର ଆଇନ ଥିଲା । ରଜାଙ୍କ ମୁଖନିଃସୃତ ବାଣୀ ଜଜ୍‌ମେଣ୍ଟରୂପେ ଗଣ୍ୟ ହେଉଥିଲା । ଯଥାର୍ଥରେ **"I am the state"** ଅର୍ଥାତ୍ "ରାଜ୍ୟ କହିଲେ ମୁଁ ନିଜେ," ଏ ଉକ୍ତି ରଜାଙ୍କଠାରେ ପ୍ରଯୁଜ୍ୟ ଥିଲା । ରଜାଙ୍କର ଅନୁଗ୍ରହ ହେଲେ ପ୍ରଜାର ଅଦ୍ଭୁତ ଉନ୍ନତି ଘଟୁଥିଲା କିନ୍ତୁ କୋପଦୃଷ୍ଟି ହେଲେ ତା'ର ସର୍ବନାଶ ହେଉଥିଲା ।

ରଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଶକ୍ତି କାହାର ନଥିଲା । ରଜାଙ୍କ ହୁକୁମ ଅମାନ୍ୟ କରି ପ୍ରଜାମାନଙ୍କୁ ଜେଲ ଜୋରିମାନା ଓ ବେତ୍ରାଘାତ ଆଦି ଦଣ୍ଡ ଦିଆଯାଉଥିଲା । କର୍ମଚାରୀମାନେ ଅତ୍ୟାଚାର, ଦମନ ଓ ଶୋଷଣ ଆଦି କାର୍ଯ୍ୟରେ ପାରଙ୍ଗମ ଥିଲେ ।

ରଣପୁର ରାଜ୍ୟରେ ପୋଖରୀର ମାଛ, ଜଙ୍ଗଲର ପଶୁ, ଆମ୍ବ ସବୁ ରାଜାଙ୍କର । କେହି ତାକୁ ଖାଇଲେ ଯଦି ରାଜାଙ୍କ କାନକୁ ବେନାମି ଚିଠିରେ ଖବର ଯାଏ, ତା'ର ଘର ଖାନତଲସ ହୋଇ ଦଣ୍ଡବିଧାନ ହେଉଥିଲା । ସମୟେ ସମୟେ ପୋଲିସବାଲା ଧନୀ ପ୍ରଜାର ବାଡରେ ମାଛକଣ୍ଟା ପୋତି ପୋଖରୀ ମାଛ ଖାଇଥିବା ଅଭିଯୋଗରେ ଉତ୍କୋଚ ଆଦାୟ କରୁଥିଲେ । ଦେୱାନ ଜଗନ୍ନାଥ ମହାନ୍ତି ଓ ଦାରୋଗା ଘାନବନ୍ଧୁ ମହାନ୍ତିଙ୍କ ଅତ୍ୟାଚାର ରଣପୁରରେ ସାଂଘାତିକ ରୂପ ନେଇଥିଲା ।

ରଣପୁର ରାଜ୍ୟରେ ରାଜକର୍ମଚାରୀ ମାନଙ୍କ ଅତ୍ୟାଚାରର କାହାଣୀ ତତ୍କାଳୀନ ଜନୈକ ପ୍ରଜା ରାଜସୁନାଖଳା ନିବାସୀ ଶ୍ରୀ ଅରକ୍ଷିତ ମହାରଣାଙ୍କର "ରଣପୁର ପ୍ରଜାଙ୍କ ଦୁଃଖ କାହାଣୀ" ଶୀର୍ଷକ ଏକ ପୁସ୍ତିକାରେ ୧୯୩୮ ମସିହାରେ ପ୍ରକାଶ କରିଥିଲେ । ଏହା ପ୍ରଜାଙ୍କ ମଧ୍ୟରେ ଗମ୍ଭୀର ଆଲୋଡନ ସୃଷ୍ଟି କରିଥିଲା । ପୁସ୍ତିକାର ୫ମ ଓ ୬ଷ୍ଠ ପୃଷ୍ଠାର କେତେକ ଉଦ୍ଧୃତାଂଶ ପାଠକଙ୍କ ଅବଗତି ନିମିତ୍ତ ନିମ୍ନରେ ପ୍ରଦାନ କରାଗଲା ।

"ସୁନାଖଳା ଗ୍ରାମେ ପୁଲିସ ଯାହାକ କରିଲେ ଅନ୍ୟାୟ ରୀତି
ମରହଟ୍ଟା ରାଜତ୍ୱେ ଶୁଣା ବି ନଥିଲା ଏପରି ଶାସନ ନୀତି ହେ
(ଭୂତ) ଲିଙ୍ଗରାଜ ଜମାଦାର
ଯାହା କରିଛନ୍ତି ଅତ୍ୟାଚାର ହେ ।୧୬।
ନୃସିଂହ ପୁରର ଶାସନ ବ୍ରାହ୍ମଣ ଭଗବାନ ମିଶ୍ର ନାମ
ବାନ୍ଧି ଆମ୍ବବାସେ ଛନ୍ଦି ବୃଥା ଦୋଷେ ମାଡ ମାରିଲେ ବହନ
ଲାଞ୍ଚ ଏକଶତ ଟଙ୍କା
ମନେ ନକରି ଟିକିଏ ଶଙ୍କା ହେ ।୧୭।
ଛାଡି ଘର ଦ୍ୱାର ଧେନୁ ପରିବାର ସେ ଆପଣେ ଗଲେ ଗୃହୀ
ଏହିପରି କେତେ ଗଲେଣି ଆବର ପଡିଅଛି ଖାଲି ବାଲି ହେ
ଆହା ଏକ ନାରଖାର
ହେଲେ ସୁନାଖଳା ଅନ୍ଧକାର ହେ ।୧୮।
ଦେୱାନଙ୍କ କୋପ ଅତ୍ୟାଚାର ଫଳ ସୁନାଖଳା କଲା ଚୂନା
ଏକ ଟଙ୍କା ଠାରୁ ଆରମ୍ଭ କରିଣ ଶହ ଶହ ହୋଇ ସିନା ହେ
କେସ୍ ଯୋଡି ଦ୍ରୁତ ଘରେ
ବାଣ୍ଟି ଦଶପଣ, ଛ ପଣରେ ହେ ।୧୯।

ବଧି ପାଟଣାରୁ ବାସୁ ସାହୁ ଘରୁ ଟଙ୍କା ନେଲେ ବୋଝ କରି
ଗଞ୍ଜାଇ ଗଛକୁ ବାଡରେ ପୋତାଇ ପୋଲିସ୍ ଧରିଲେ ଓସ୍ତର ହେ
ସୁନାଖଳାରୁ ପୋଲିସ
ପ୍ରଜାବର୍ଗଙ୍କୁ କରିଲେ ନାଶ ହେ ।୨ ।
ଗୋପୀନାଥପୁର ହାଡ଼ୁ ସାହୁ ଘରେ ଅଫିମ ପକାଇ ଦେଲେ
ଜମାଦାର 'କୋଟ' ବାବୁଙ୍କୁ ଅଣାଇ ଟରଣୀ ଦ୍ୱାରା ଖର୍ଚ୍ଚିଲେ
ନେଲେ ଅଣାଇଶ ଟଙ୍କା
ଡରେ ନ ବନ୍ଧିଲେ ଶଙ୍କା ହେ ।୨୧।
ନନ୍ଦିପୁରର ଆନନ୍ଦ ସାହୁର ସର୍ବସ୍ୱ କରିଲେ ନାଶ
କର୍ଣ୍ଣୀଙ୍କ ଦ୍ୱାରା ବାସନ ପ୍ରଭୃତି ଘରେ ଥୋଇ କଲେ କେସ୍ ହେ
ତା'ର ଘରେ ପଶି କରି
ତାଙ୍କୁ ଥାନାକୁ ଆଣିଲେ ଧରି ହେ ।୨୨।
ଛରଶ ଟଙ୍କା ନେଇଣ ତାଙ୍କଠାରୁ ଏହି କେସ୍ ଖର୍ଚ୍ଚି ଦେଲେ
ଡାରେକ୍ଟର ସାହୁ ପାଳଗଦା ତଳେ ମିଛେ ଶିଙ୍ଗ ଥୋଇଲେ ହେ
ଧମକା ଚମକା କଲେ
ଟଙ୍କା ନପାଇ ଖଲାସ ଦେଲେ ହେ ।୨୩।
କା ଘରେ ଅଫିମ କାହାଘରେ କାଠ କାହା ଘରେ ଗଞ୍ଜାଇ
ଟରଣୀଙ୍କ ଦ୍ୱାରା ବେନାମି ଲେଖାଇ ମକଦ୍ଦମା ଖଞ୍ଜାଇ ହେ
ଓସ୍ତର ବରଷ ମଧ୍ୟରେ
ଟଙ୍କା ନେଲେ ହଜାର ହଜାର ହେ ।୨୪।

ଉପରୋକ୍ତ ଲେଖାରୁ ରାଜ ଶାସନରେ ଦେଓ୍ୱାନ୍ ଓ ପୁଲିସ କର୍ମଚାରୀମାନଙ୍କ ଦ୍ୱାରା ହେଉଥିବା ଅନ୍ୟାୟ ଅନୀତି ତଥା ଅତ୍ୟାଚାରର ଯଥେଷ୍ଟ ପ୍ରମାଣ ମିଳେ ।

ପ୍ରଜା ମାନଙ୍କର ଗଛ ଓ ମାଛ ଉପରେ ଅଧିକାର ନଥିଲା । କିନ୍ତୁ ସମସ୍ତ ସରକାରୀ ଜାଗାରେ ଥିବା ଫଳନ୍ତି ଗଛ ଯଥା - ଆମ୍ବ, ପଣସ, ନଡିଆ ଏବଂ ପୋଖରୀମାନଙ୍କର ରକ୍ଷଣା ବେକ୍ଷଣ ଗ୍ରାମବାସୀଙ୍କ ଉପରେ ନ୍ୟସ୍ତ ଥିଲା । ଗାଁ ତୋଟାର ସମସ୍ତ ଆମ୍ବ ରଜାଙ୍କ ଉଆସ ପର୍ଯ୍ୟନ୍ତ ଆସୁଥିଲା । ତାହା ରଜାଙ୍କର ଅନୁଗୃହୀତ ପ୍ରଜା ଓ କର୍ମଚାରୀମାନେ ବାଣ୍ଟି ନେଉଥିଲେ । ବର୍ଷକ

ଗାଁ ପୋଖରୀର ମାଛ ରାଜାଙ୍କ ନାମରେ ଉଥ.ସ ପର୍ଯ୍ୟନ୍ତ ଆସି କର୍ମଚାରୀମାନଙ୍କ ଘରକୁ ଯାଉଥିଲା । ରାଜା ପ୍ରତ୍ତଦନ ପାରଧିକୁ ଯାଇ ଏକାଧିକ ହରିଣ, ସମ୍ବର ପ୍ରଭୃତି ବନ୍ୟଜନ୍ତୁ ଶିକାର କରି ଆଣୁଥିଲେ ମଧ୍ୟ ନିଜ ପାଇଁ ତିନି ଚାରି କେ.ଜି ମାଂସରୁ ଅଧିକ ଆବଶ୍ୟକ କରୁ ନଥିଲେ ଏବଂ ଅବଶିଷ୍ଟ ମାଂସ କେବଳ ବାଣ୍ଟିବାରେ ଯାଉଥିଲା ।

ପ୍ରଜାମାନେ ଘର ତିଆରି ନିମନ୍ତେ ନିଜ କୋବଲପତ୍ର ଜାଗାରୁ ପଥର କାଟି ବ୍ୟବହାର କରିବା ନିଷିଦ୍ଧ ଥିଲା । ନିଜ ରୁଚି ଅନୁସାରେ ତ୍ରିହ, କୋଠାଘର, ଦୋଷରା ପାହାଚ, ଯାଉଁଳ କବାଟ ଓ ଗୃହମା ମଣ୍ଡପ ନିର୍ମାଣ କରିବା ବାରଣ ଥିଲା । ରାଜାଙ୍କ ଉପରେ ଅଧିକାଂଶ ପ୍ରଜା ଦାଣ୍ଡଘରେ ଛାଟି କବାଟ ଲଗାଉଥିଲେ । ସେଥିପାଇଁ ସେତେବେଳେ ପ୍ରବାଦ ଥିଲା, " ଯେବେ ଗଡ଼ଜାତେ କରିବୁ ଘର, ଦାଣ୍ଡଘର ଖଣ୍ଡି ଅଛୁଆ କର ।"

ରଣପୁରରେ ନରବଳି ଏକ ଜଘନ୍ୟ ପ୍ରଥା ଥିଲା । ପ୍ରତିବର୍ଷ ମାଘ ମାସରେ ମଣିନାଗ ଠାକୁରାଣୀଙ୍କ ପାଇଁ ନରବଳି ଦିଆ ଯାଉଥିଲା । ଏଥିପାଇଁ ଅଣିଗୋଟି ପରିବାରକୁ "ରକ୍ତଫଟା ଜାଗିର" ଦିଆ ଯାଉଥିଲା । ସେମାନଙ୍କୁ ତଣ୍ଟିକଟା କୁହାଯାଉଥିଲା । ତଣ୍ଟିକଟାମାନେ ଲୁଚି ଲୁଚି ବଣ ଜଙ୍ଗଲରେ ବୁଲୁଥାନ୍ତି । ଏକୁଟିଆ ଲୋକ ଦେଖିଲେ ତା'ର ତଣ୍ଟି କଣାକରି ଏବଂ ତା'କୁ କୁହ ଦଳ ତଣ୍ଟିପଟୁ ରକ୍ତ ସଂଗ୍ରହ କରନ୍ତି । ତାପରେ ସଂଗୃହୀତ ରକ୍ତକୁ ଏକ ବାଉଁଶ ନଳୀ ସାହାଯ୍ୟରେ ନେଇ ମଣିନାଗ ଠାକୁରାଣୀଙ୍କୁ ସମର୍ପଣ କରନ୍ତି । ନରବଳି ପ୍ରଥା ଯୋଗୁଁ ମାଘମାସ ରଣପୁର ପ୍ରଜାଙ୍କ ମନରେ ଆତଙ୍କ ସୃଷ୍ଟି କରୁଥିଲା । ରଣପୁରର 'ତଣ୍ଟିକଟା' ବା 'ମାଘମାସିଆ' ମାନଙ୍କୁ ଉତ୍ତର ଭାରତର ଠଗମାନଙ୍କ ସଙ୍ଗେ ତୁଳନା କରାଯାଇପାରେ । ଶ୍ରୀ ବ୍ରଜବନ୍ଧୁ ପାଇକରାୟ **"The Thagas of Ranpur"** ଶୀର୍ଷକ ଏକ ସନ୍ଦର୍ଭରେ ଏହି ତଣ୍ଟିକଟା ମାନଙ୍କ ଯଥାର୍ଥ ଚରିତ୍ର ବର୍ଣ୍ଣନା କରିଛନ୍ତି ।

ବିନା ମୂଲ୍ୟରେ କାମ କରିବାକୁ ହିଁ ବେଠି କୁହାଯାଏ । ଗଣତନ୍ତ୍ର ଶାସନରେ ବିନା ମୂଲ୍ୟରେ କାମ କରିବା କୁଆଡ଼ି ଦେଖାଯାଏ । କିନ୍ତୁ ଗଡ଼ଜାତ ରାଜ୍ୟମାନଙ୍କରେ ବେଠିରେ କାମ କରିବା ସବୁଠି ଦେଖା ଯାଉଥିଲା । ଚନ୍ଦ୍ରପୁରସ୍ଥିତ "ବସନ୍ତମଞ୍ଜରୀ ସ୍ମୃତି ସ୍ମୃତ୍ୟନ୍ତାସ" ଅଞ୍ଚଳ ଗଡ଼ଜାତ ବେଠିର ନମୁନାରୂପେ ରଣପୁର ପ୍ରଜାଙ୍କ ସ୍ମୃତିପଟରେ ଚିର ଜାଗ୍ରତହୋଇ ରହିଅଛି ।

ସେତେବେଳେ ରଣପୁର ରାଜ୍ୟରେ ଯେତେ ରାସ୍ତାଘାଟ, ପୋଲ ପ୍ରଭୃତି ତିଆରି ହୋଇଥିଲା ସେ ସମସ୍ତ ପ୍ରଜାଙ୍କ ବେଠିରେ ହୋଇଥିଲା । ରାଜାଙ୍କର ସ୍ୱ ପୁଷ୍କରିଣୀ ଖନନ ଓ ଜମି ଆବାଦ ମଧ୍ୟ ବେଠିରେ ହେଉଥିଲା । ରାଜା ମଉଜ ମଜଲିସ୍ ମାରି ଶିକାରକୁ ଗଲେ ପ୍ରଜାମାନେ ନିଜ ହାତରୁ ଖାଇ ଶିକାର କାମରେ ସାହାଯ୍ୟ କରୁଥିଲେ ।

ରଣପୁରରେ ଧର୍ମ କାର୍ଯ୍ୟ ଉପଲକ୍ଷେ ବେଠିରେ ମଧ୍ୟ ପ୍ରୟୋଗ ହେଉଥିଲା । ରଣପୁରରେ ଦୁଇମାସ ପର୍ଯ୍ୟନ୍ତ ରଥ ବେଠି ଚାଲୁଥିଲା । ରଥ ଯାତ୍ରା ନିମିତ୍ତ ସମସ୍ତ କାଠ ଓ ଦଉଡ଼ି ନିଜ ଶଗଡ଼ ଓ କାନ୍ଧରେ ବୋହି ଆଣୁଥିଲେ । ସେତେବେଳେ ରଣପୁରରେ ଯେଉଁ ରଥମାନ ନିର୍ମିତ ହେଉଥିଲା ତାହା ଅଧୁନା ପୁରୀ ରଥଗୁଡ଼ିକ ଆକାରର ପ୍ରାୟ ଦୁଇ କିମ୍ବା ତିନିଗୁଣ ଥିଲା । ପୁରୀ ରଥଯାତ୍ରା ଅନୁକରଣରେ ରଣପୁରରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ବରାଟ ବରାଟ ତିନି ଗୋଟି ରଥ ଏବଂ ମଦନ ମୋହନ ଓ ସୁଦର୍ଶନ ଚକ୍ର ପାଇଁ ଅନ୍ୟ ଦୁଇଗୋଟି କ୍ଷୁଦ୍ର ରଥକୁ ଟାଣିନେବା କେବଳ ସମୂହ ବେଠିଦ୍ୱାରା ସମ୍ଭବ ହେଉଥିଲା । ରଥଯାତ୍ରା ସମୟରେ ସମଗ୍ର ରଣପୁରର ପ୍ରଜାମାନେ ରଥ ବେଠିରେ ଯୋଗ ଦେବାକୁ ବାଧ୍ୟ ହେଉଥିଲେ । କେତେକ ଧନୀ ତଥା ମାନୀ ପ୍ରଜା ରଥ ବେଠିରୁ ମୁକ୍ତ ପାଇବା ପାଇଁ ପୋଲିସ କନେଷ୍ଟବଳ ଓ ଚୌକିଦାରଙ୍କୁ କିଛି କିଛି ଉତ୍କୋଚ ଦେଉଥିଲେ । ରଥବେଠି ପରି ସଡ଼କ ବେଠି, ଘର ତିଆରି ଓ ଛମର ବେଠି ହେଉଥିଲା ।

ରାଜତନ୍ତ୍ର ଶାସନରେ ରାଜା କିମ୍ବା ରାଜକର୍ମଚାରୀ ମାନଙ୍କର ଅନ୍ୟାୟ ଜୁଲୁମ୍ ବ୍ୟତୀତ ବିଭିନ୍ନ ପ୍ରକାରର ଭେଟି, ମାଗଣ ଓ ରସଦ ପ୍ରଭୃତିର ବ୍ୟବସ୍ଥା ଥିଲା, ତାହା ନିମ୍ନରେ ଉଲ୍ଲେଖ କରୁଛି ।

ରାଜାଘର ବିଭାଘର, ବ୍ରତଘର ଓ ଶୁଦ୍ଧଘର ଇତ୍ୟାଦି କାର୍ଯ୍ୟରେ ଏବଂ ପର୍ବପର୍ବାଣୀ, ଯାନଯାତ୍ରା ପ୍ରଭୃତିରେ ଯାହା ଖର୍ଚ୍ଚ ହେଉଥିଲା ତାହା ପ୍ରଜାମାନେ ଚାନ୍ଦାକରି ଦେଉଥିଲେ । ଏହା ମାଗଣ ନାମରେ ଅଭିହିତ ଥିଲା । ଏହା ଟଙ୍କା ଓ ଜିନିଷ ଉଭୟ ଆକାରରେ ବାଧ୍ୟକରି ଅସୁଲ ହେଉଥିଲା । ଖଜଣା ବ୍ୟତୀତ ଧାନ, ନଡ଼ା ଓ ବାଉଁଶ ଆଦାୟ ହେଉଥିଲା । ଧୋବା, ଭଣ୍ଡାରୀ, ହାଡ଼ି, କୁମ୍ଭାର, ତେଲି, କେଉଟ ଓ ତନ୍ତୀଙ୍କ ଠାରୁ ସେମାନଙ୍କ ବ୍ୟବସାୟ ଧନ୍ଦାରୁ

ଫିସ୍ ଆଦାୟ ହେଉଥିଲା । ହାଡମାନଙ୍କୁ ପଞ୍ଚମୀ ଚମଡା ନନ୍ଦା, ଗୋରଚନା ଦେବାକୁ ପଡୁଥିଲା । ଗୋରୁ, ମଇଁଷିଙ୍କେ ଫିସ୍ ନିଆ ହେଉଥିଲା ଜମି ଦାଖଲ ଖାରଜ, ପୋଷ୍ୟପୁତ୍ର ଗ୍ରହଣରେ ନଜରଣା ଆଦାୟ ହେଉଥିଲା । ନାଟରଙ୍ଗ, ଯାତ୍ରା ପର୍ବ ପାଇଁ ଯେ କୌଣସି ପ୍ରଜାକୁ ବାଧ କରାଯାଉଥିଲା । ନିଜ ନିଜ ଜାତିର ଚିହ୍ନ ଧାରଣ ଓ ଭୂଷଣ ବ୍ୟବହାର କରିବାରେ ବାରଣ ଥିଲା । ରାଜ୍ୟର କୌଣସି ପ୍ରଜା ସଭା ସମିତି କରିବା କିମ୍ବା ଖବର କାଗଜ ପଢ଼ିବା ବେଆଇନ୍ ଥିଲା । ମୋକଦ୍ଦମା ମାନଙ୍କରେ ଓକିଲ, ମୁକ୍ତିଆର ନିଯୁକ୍ତ କରିବା ପାଇଁ ଅଧିକାର ପ୍ରଜାମାନଙ୍କର ନଥିଲା । ବେଠି ଭଳ ଭେଟି ମଧ୍ୟ ଏକ ଘୃଣ୍ୟ ପ୍ରଥା ଥିଲା । ନୂଆଁ ଓ ଦଶହରା ଦିନ ପ୍ରଜାମାନେ ଓ ସର୍ବରାକାରମାନେ ଟଙ୍କା ଗହଣା ଓ ହାତତିଆରି ପଦାର୍ଥ ମାନ ରାଜାଙ୍କ ନିକଟରେ ଭେଟି ଦେବାକୁ ବାଧ୍ୟ ହେଉଥିଲେ । ପୁନଶ୍ଚ ରାଜା କିମ୍ବା କର୍ମଚାରୀମାନେ ମଫସଲ ଗସ୍ତ ସମୟରେ ପ୍ରଜାମାନଙ୍କୁ ସେମାନଙ୍କର ରାଜକୀୟ ଖାଦ୍ୟପେୟ କାର୍ଯ୍ୟରେ ଖର୍ଚ୍ଚାନ୍ତ ହେବାକୁ ପଡୁଥିଲା । ସର୍ବରାକାରମାନେ ପ୍ରଜାଙ୍କଠାରୁ ଉକ୍ତ ଖର୍ଚ୍ଚ ଅସୁଲ କରୁଥିଲେ । ଦଶହରାର ଦୁଇମାସ ପୂର୍ବରୁ ପାଇକମାନେ ପାଇକନାଚ ଅଭ୍ୟାସ କରନ୍ତି ଓ ଦଶହରାକୁ ଉକ୍ତ ନାଚ ପ୍ରଦର୍ଶନ କରିବାକୁ ବାଧ୍ୟ ହୁଅନ୍ତି । ଚନ୍ଦନ ଯାତ୍ରାର ଭେକ ଦ୍ୱାଦଶୀ ଉପଲକ୍ଷେ କେତେକ ପ୍ରଜାଙ୍କୁ ବାଣ 'ଭେଟି' ରୂପେ ଦେବାକୁ ପଡୁଥିଲା ।

**ପ୍ରଜାମଣ୍ଡଳ ଗଠନ –** ରାଜ ଶାସନର ଅନ୍ୟାୟ ଅତ୍ୟାଚାର ପ୍ରଜାମାନେ ହୃଦୟଙ୍ଗମ କରିପାରୁଥିଲେ । ନିରୀହ ପ୍ରଜାମାନେ ଅନ୍ୟାୟକୁ ମୁଣ୍ଡ ପାତି ସହି ନେଲେ ମଧ୍ୟ ସ୍ୱାଧୀନଚେତା ପ୍ରଜାମାନେ ଶାସନର ତ୍ରୁଟି ଦର୍ଶାଇବାକୁ ଯାଇ ରାଜା ତଥା ରାଜ କର୍ମଚାରୀମାନଙ୍କର ଚକ୍ଷୁଶୂଳ ହେଲେ । ଫଳତଃ ସେମାନଙ୍କ ମଧ୍ୟରୁ କେତେକଙ୍କୁ ରାଜ୍ୟରୁ ବହିଷ୍କାର (Exodus) କରାଯାଉଥିଲା । ଆଉ କେତେକ ସ୍ୱେଚ୍ଛାରେ ରଣପୁର ରାଜ୍ୟ ଛାଡି ଖାସମାହାଲ ଅଞ୍ଚଳରେ ଅପେକ୍ଷାକୃତ ସ୍ୱାଧୀନ ମନୋବୃତ୍ତିରେ ବସବାସ କରିବା ପାଇଁ ଚାଲିଯାଇଥିଲେ ।

ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ଜାତୀୟ କଂଗ୍ରେସ ତା'ର ଲକ୍ଷ୍ୟ ହାସଲ ଦିଗରେ ଅଗ୍ରଗତି କରୁଥାଏ । ପରାଧୀନତାର ବେଢ଼ିରୁ ମୁକ୍ତ ହେବା ପାଇଁ ଭାରତୀୟ ଜନସାଧାରଣ ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ ଉତ୍କଣ୍ଠାର ସହ ଅପେକ୍ଷା କରି ରହିଥାନ୍ତି । ଓଡ଼ିଶାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ

କଂଗ୍ରେସ ଦଳ ନୂତନଭାବେ ଗଠିତ ହୋଇ ଉକ୍ତ ଲକ୍ଷ୍ୟ ହାସଲ ଦଗରେ କାର୍ଯ୍ୟ କରୁଥାଏ । କଂଗ୍ରେସ ଦଳର ପ୍ରଭାବରେ ବିଭିନ୍ନ ଗଡଜାତ ମାନଙ୍କରେ ପ୍ରଜାମଣ୍ଡଳ ଗଠିତ ହୋଇ ସ୍ୱାଧୀନତା ପାଇଁ ଆଗେଇ ଆସିଲା । ରଣପୁରରେ ସଚେତନ ପ୍ରଜାମାନେ ସଂଗଠିତ ହୋଇ ପ୍ରଜାମଣ୍ଡଳ ଗଠନ କଲେ । ଫଳରେ ୧୯୩୮ ମସିହା ଶେଷାର୍ଦ୍ଧରେ ରଣପୁର ପ୍ରଜାମଣ୍ଡଳ ଗଠିତ ହେଲା । ଏହି ପ୍ରଜାମଣ୍ଡଳରେ ବନମାଳୀ ରାମ-ସଭାପତି, କୃପାସିନ୍ଧୁ ମିଶ୍ର-ଉପ ସଭାପତି, ରଘୁନାଥ ମହାନ୍ତି-ସମ୍ପାଦକ, ଦିବାକର ପଣ୍ଡା-ସଂଗଠନ ସମ୍ପାଦକ ଓ ଅଗାଧୁ ବରାଡ଼-କୋଷାଧ୍ୟକ୍ଷ ରୂପେ କାର୍ଯ୍ୟ କରୁଥିଲେ । ପ୍ରଜାମଣ୍ଡଳ ପକ୍ଷରୁ ପ୍ରଜାଙ୍କର ଗଛ ଓ ମାଛ ଉପରେ ଅଧିକାର, ବେଠି, ଭେଟି ଓ ମାଗଣ ରସଦର ଉଚ୍ଛେଦ ଆଦି ଦାବୀ କରାଯାଉଥିଲା । ପ୍ରଜା ମେଳରେ ଆତଙ୍କିତ ହୋଇ ଅତ୍ୟାଚାରୀ ଦେୱାନ୍ ଜଗନ୍ନାଥ ମହାନ୍ତି ରଣପୁର ରାଜ୍ୟ ଛାଡ଼ି ଚାଲି ଯାଇଥିଲେ ।

**ବେଜଲଗେଟ୍ ହତ୍ୟାକାଣ୍ଡ—** ପ୍ରଜାମଣ୍ଡଳ ପକ୍ଷରୁ ଅନୁଷ୍ଠିତ ଆନ୍ଦୋଳନ କ୍ରମଶଃ ଭୟଙ୍କର ହେଲା । ଫଳରେ ସଂଗ୍ରାମୀ କୃପାସିନ୍ଧୁ ମିଶ୍ରଙ୍କୁ ଗିରଫ କରାଗଲା । ଏହି ଗିରଫଦାରୀର ପ୍ରତିବାଦରେ ସାରା ରଣପୁରରେ ବିଦ୍ରୋହର ନିଆଁ ଜଳି ଉଠିଲା । ରାଜା ଆତଙ୍କିତ ହୋଇ ପଲିଟିକାଲ୍ ଏଜେଣ୍ଟ ମେଜର ବେଜଲଗେଟ୍‌ଙ୍କ ସାହାଯ୍ୟ ଲୋଡ଼ିଲେ ।

ମେଜର ବେଜଲଗେଟ୍ ରଣପୁର ଆସୁଥିବା ଖବର ତଡ଼ିତ୍‌ବେଗରେ ଚାରିଆଡ଼େ ଖେଳିଗଲା । ଅଜଣା ଆଶଙ୍କାରେ ଲୋକେ ଶିହରି ଉଠିଲେ । ଲୋକମାନେ ଆଶଙ୍କା କଲେ ସାହେବ ନିଶ୍ଚୟ କୃପାସିନ୍ଧୁ ମିଶ୍ର ସମେତ ଅନ୍ୟ ବନ୍ଦୀମାନଙ୍କୁ ମାରିଦେବ ।

ରଣପୁର ରାଜାଙ୍କ ସ୍ୱତନ୍ତ୍ର ଦୂତଠାରୁ ୧୯୩୯ ଜାନୁୟାରୀ ୪ତାରିଖରେ ପତ୍ର ପାଇ ପଲିଟିକାଲ୍ ଏଜେଣ୍ଟ ରଣପୁର ଅଭିମୁଖେ ଯାତ୍ରା ଆରମ୍ଭ କରିବା ପାଇଁ ଚିନ୍ତା କଲେ । ଉକ୍ତ ଦିନ ନୟାଗଡ଼ ଡାକ ବଙ୍ଗଳାରେ ମେମ୍ ସାହେବ (ବେଜଲଗେଟ୍‌ଙ୍କ ପତ୍ନୀ) ତାଙ୍କ ସଙ୍ଗେ ଥିଲେ । ଜାନୁୟାରୀ ୫ତାରିଖ ପ୍ରଭାତରେ ମେମ୍ ସାହେବ କେତେକ ଅଶୁଭ ସଙ୍କେତ ଦେଖିଲେ । ବିଳାତର ଲୋକ ହେଲେ ମଧ୍ୟ ତାଙ୍କ ହୃଦୟ ଆଶଙ୍କା ମଧ୍ୟରେ ବୁଡ଼ି ରହିଲା । ଏଣୁ ବେଜଲଗେଟ୍ ରଣପୁର ଆସିବା ପାଇଁ ଉଦ୍ୟମ କରନ୍ତେ ସେ କାକୁତିମିନତି

କରି ବାରଣ କଲେ । କିନ୍ତୁ ଶେଷରେ ତାଙ୍କର ସମସ୍ତ ଅନୁରୋଧ ବୃଥା ହେଲା । ପ୍ରତାପୀ ମେଜର ବେଜଲଗେଟ୍ ଙ୍କର ଦର୍ପରେ ରଣପୁର ଅଭିମୁଖେ ଅଗ୍ରସର ହେଲେ । ଏହି ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ ନୟାଗଡ଼ ଡ଼ାକ ବଙ୍ଗଳାର ତତ୍କାଳୀନ ଦରଓ୍ୱାନ୍ ଗୋକୁଳ ଡାକୁଆ ।

ମେଜର ବେଜଲଗେଟ୍ ୧୯୩୯ ମସିହା ଜାନୁୟାରୀ ମାସ ପାଞ୍ଚ ତାରିଖରେ ଇଟାମାଟି ଶିବିରରୁ ଫୋର୍ସ ନେଇ ରଣପୁର ଅଭିମୁଖେ ଯାତ୍ରା କଲେ । ଏଣେ ରଣପୁର-ରାଜସୁନାଖଳା ରାସ୍ତାର ଲେଧାଟୁଆ ଠାରେ ଅନେକ ବିଦ୍ରୋହୀ ରାସ୍ତାର ଦୁଇ କଡ଼ରୁ ଗଛମାନ କାଟି ରାସ୍ତା ମଝିରେ ପକାଇ ପଥ ଅବରୋଧ କରିଥିଲେ । ସେମାନଙ୍କର ଉଦ୍ଦେଶ୍ୟ ବେଜଲଗେଟ୍ ସାହେବ ରାସ୍ତା ଅବରୋଧ ଯୋଗୁଁ ଫେରିଗଲେ ବନ୍ଦୀମାନଙ୍କୁ ରାଜା ହୁଏତ ବିପୁଳ ପ୍ରଜା ସମାବେଶ ଦେଖି ଭୟରେ ମୁକ୍ତ ଦେବେ । ଏଣେ ବେଜଲଗେଟ୍ ର ମନରେ କ୍ରୋଧ, ହୃଦୟରେ କୋହ ଓ ଆଖିରେ ଲେଲୁପ ଦୃଷ୍ଟି । ରଣପୁର ବାସୀଙ୍କୁ ଉପଯୁକ୍ତ ଶିକ୍ଷା ଦିଆଯିବ । ଢେଙ୍କାନାଳର ବାଜି ରାଉତ ସମେତ ଅନେକଙ୍କୁ ହତ୍ୟା ଓ ଗର୍ଭିଣୀ ସ୍ତ୍ରୀଙ୍କ ଉପରେ ହାଣ୍ଟା ଚଳାଇ ଦମନଲୀଳା ଚଳାଇବାରେ ପାରଙ୍ଗମ ବେଜଲଗେଟ୍ ଏ ସାମାନ୍ୟ ପଥ ଅବରୋଧରେ ଦବିଯିବାର ପାତ୍ର ନଥିଲେ । ସାଥିରେ ଥିବା ପୋଲିସ ଜମାଦାର ଶ୍ରୀବନ୍ଧ ଦୃଷ୍ଟି ଓ କାଶୀ ରାଉତଙ୍କୁ ରାସ୍ତା ଅବରୋଧ ଅଭିଯୋଗରେ ନିସ୍ତୁକ ପ୍ରହାର କରି ଉଲଗ୍ନାଂଗିତ ଅବସ୍ଥାରେ ପକାଇଥିଲେ । ସେ ପୋଲିସଙ୍କ ସାହାଯ୍ୟରେ ରାସ୍ତା ପରିଷ୍କାର କରି ରଣପୁର ରାଜ ପ୍ରାସାଦରେ ପହଞ୍ଚିଲେ । ସେତେବେଳେ ରଣପୁର ଗଡ଼ ଲୋକାରଣ୍ୟ । ସେମାନେ "କୃପାସିନ୍ଧୁ ମିଶ୍ରଙ୍କୁ ଖଲାସ କର" ଓ "ବେଠି ନିର୍ଯ୍ୟାତନା" ବନ୍ଦକର ଆଦି ଧ୍ୱନି ଦେଉଥିଲେ ।

ପ୍ରଜାମଣ୍ଡଳର ସମ୍ପାଦକ ରଘୁନାଥ ମହାନ୍ତି ଓ ସଂଗଠନ ସମ୍ପାଦକ ବିଦ୍ରୋହୀ ଦିବାକର ପରିଡ଼ା ରାଜବାଟୀ ସାମନାରେ ଉପସ୍ଥିତ ଜନତାଙ୍କ ମେଳରେ ଦେଓ୍ୱାନ୍ ଚନ୍ଦ୍ରେଶ୍ୱର ମିଶ୍ରଙ୍କ ସହ ୨୬-୧୧-୩୮ ତାରିଖରେ ରାଜ-ଦରବାରଙ୍କ ଘୋଷିତ ଦାବୀ ସମ୍ପର୍କୀୟ ଘୋଷଣାପତ୍ରର ଆଲୋଚନାରେ ବ୍ୟାପୃତ ଥିଲେ । ଏହି ସମୟରେ ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ୍ ସେଠାରେ ଉପସ୍ଥିତ ହେଲେ । ଦେଓ୍ୱାନ୍ ସାହେବ ପଲିଟିକାଲ ଏଜେଣ୍ଟଙ୍କୁ ପ୍ରଜା ମାନଙ୍କର କେଉଁ କେଉଁ ଦାବି ପୂରଣ ହୋଇଛି ତାହା ଘୋଷଣାପତ୍ରରୁ

ଚିଠି ଇଂରାଜୀ ଅନୁବାଦ କରି ବୁଝାଇଥିଲେ । ଏହି ସମୟକୁ ଉତ୍ସୁକ ଜନତା ମଧ୍ୟରେ ଦେଖାଗଲା ଏକ ନୂତନ ଆଲୋଡ଼ନ । ଏକ ଶଗଡ଼ ନିକଟରେ ଭୀଷଣ ଜନଗହଳି । ମଣିଷ ଦ୍ୱାରା ଟଣା ଯାଉଥିବା ଶଗଡ଼ କ୍ରମଶଃ ରାଜପ୍ରାସାଦ ନିକଟରେ ପହଞ୍ଚିଲା । ଯେଉଁ ଲୋକମାନେ ବେଜଲଗେଟ୍‌ଙ୍କ ସହ ହେଉଥିବା ଆଲୋଚନାର ଫଳାଫଳ ଶୁଣିବାକୁ ଉତ୍କଣ୍ଠାର ସହ ବସି ରହିଥିଲେ, ସେମାନେ ଶଗଡ଼ ପଛେ ପଛେ ଚାଲିଲେ ।

ଶଗଡ଼ ଓ ତା' ପଛେ ପଛେ ଏପରି ଜନଗହଳିର କାରଣ ସାହେବ ଜାଣିବାକୁ ଚାହିଁଲେ । ଦେଓ୍ୱାନ୍ ବୁଝାଇ ଦେଲେ ଯେ ସେ ରଣପୁରକୁ ଆସିବା ସମୟରେ ଲୋଧାଚୂଆ ଠାରେ ଲୋକଙ୍କୁ ଗୁଳିକରି ମାରି ଦେଇଛନ୍ତି । ସେମାନେ ମୁମୂର୍ଷ ଅବସ୍ଥାରେ ଅଛନ୍ତି । ସେମାନଙ୍କୁ ଟାଙ୍ଗି ଡାକ୍ତରଖାନାକୁ ନିଆ ଯାଉଛି । ଏଣୁ ଶଗଡ଼ ପଛେ ପଛେ ଭୀଷଣ ଜନଗହଳି ହେଉଛି । ସେତେବେଳକୁ ଜନରବ ହୋଇଥିଲା ଯେ ସାହେବ ଲୋଧାଚୂଆଠାରେ ଗୁଳି କରି ବୈବନ ବୃଷ୍ଟି ଓ କାଶୀ ରାଉତର ଅବସ୍ଥା ସଙ୍କଟାପନ୍ନ କରିଦେଇଛି । ବେଜଲଗେଟ୍ ଏ ବିଷୟରେ ଅନୁସନ୍ଧାନ କରିବାକୁ ହଠାତ୍ ରାଜପ୍ରାସାଦରୁ ବାହାରି ଆସିଲେ । ସାଥିରେ ନିଜର ଦେହରକ୍ଷୀ ସୁବେଦାର ନୁର ମହମ୍ମଦ ବ୍ୟତୀତ ପୋଲିସ ବାହିନୀର ଅନ୍ୟ କେହି ନଥିଲେ । ଦେଓ୍ୱାନ୍ ଚନ୍ଦ୍ରେଶ୍ୱର ମିଶ୍ର, ଜମାଦାର ମୋହରମ୍ ଖାଁ, ସିପାହୀ ସମିର୍ ଖାଁ, ସିପାହୀ ତଡାର୍ ଖାଁ, ସିପାହୀ ହସିମ୍ ଖାଁ ଓ ଶେଖ୍ ଇଲ୍ଲୋ ବେଜଲଗେଟ୍‌ଙ୍କ ପଛେ ପଛେ ୬୦/୭୦ ଫୁଟ ଅନ୍ତରରେ ଯାଉଥିଲେ ।

ଲୋକମାନଙ୍କ ଗହଣରେ ଶଗଡ଼ ଟାଙ୍ଗୀ ଅଭିମୁଖେ ରାଜଦାଣ୍ଡରେ ଚାଲିଥାଏ । ରଣପୁର ଡାକ୍ତରଖାନା ରାଜାଙ୍କ ଅଧୀନରେ ଥିବାରୁ ଖାସମହାଲ ଅନ୍ତର୍ଗତ ଟାଙ୍ଗୀ ଡାକ୍ତରଖାନାକୁ ଶଗଡ଼ ଯାଉଥିଲା । ଶଗଡ଼ ନନେବାକୁ ବେଜଲଗେଟ୍ ନିର୍ଦ୍ଦେଶ ଦେଲେ । କିନ୍ତୁ ଲୋକମାନେ ତାଙ୍କ କଥା ନମାନି ଶଗଡ଼ ଧରି ଚାଲିଲେ । ସେ ଶଗଡ଼ ବଳଦଟଣା ଶଗଡ଼ ନଥିଲା । ଲୋକମାନେ ହିଁ ଶଗଡ଼ ଟାଣୁଥିଲେ । ଲୋଧାଚୂଆଠାରୁ ଗୋବିନ୍ଦ ବୃଷ୍ଟି, କଲେଇ ରାଉତ, ରଘୁ ବୃଷ୍ଟି, ଚନ୍ଦ୍ରଧର ନାୟକ ଓ ଶନ୍ତା ନାୟକଙ୍କୁ ଶଗଡ଼ ଟାଣିବାକୁ ପଡ଼ିଥିଲା । ରଣପୁରଠାରେ ବହୁ ଲୋକ ଶଗଡ଼ ଟଣାରେ ଭାଗ ନେଇଥିଲେ । ସାହେବ ଶଗଡ଼କୁ ନଯିବା ପାଇଁ ଭିଡ଼ ଧରିଲେ ମଧ୍ୟ ଏହି ଠେଲା ପେଲା ମଧ୍ୟରେ ସାହେବ, ଶଗଡ଼ ଓ ଲୋକେ ବଡ଼ଦାଣ୍ଡ ଅତିକ୍ରମ କରି ଭଣ୍ଡାରି ସାହି

ଛକର ସକାଶେ ରାସ୍ତାକୁ ଚାଲି ଯାଇଥିଲେ । ସାହେବଙ୍କ ପାଟରୁ ତାଙ୍କର ଦେହ ରକ୍ଷୀ ସୁବେଦାର ନୁର ମହମ୍ମଦ ଠେଲାଠେଲିରେ ଅଲଗା ହୋଇଗଲେ । ସାହେବ ଦୁଇଜଣ ଲୋକଙ୍କୁ ମାରି ଦେଇଥିବା ଜନରବ ହୋଇଥିବାରୁ ଲୋକମାନେ କ୍ରୋଧାନ୍ୱିତ ହୋଇଥିଲେ । ଲୋକଙ୍କ ଭିତରୁ ଜଣେ କେହି ଚିତ୍କାର କଲା, "ଭାଇମାନେ, ଏ ପଲିଟିକା ସାହେବ ଆମ ଲୋକଙ୍କୁ ମାରୁଛି, ଶଳାକୁ ଧର ଧର ମାର ମାର ।" ଏହାପରେ ୩୩ ବର୍ଷର ଦୀର୍ଘକାୟ ବଳିଷ୍ଠ ଯୁବକ ଅର୍ଜୁନ ଗଉଡ ବେଜଲଗେଟ୍‌ର ସମ୍ମୁଖରେ ଦଣ୍ଡାୟମାନ ହୋଇ ଦୁଇହସ୍ତ ପ୍ରସାରକରି ତାଙ୍କୁ ଅବରୋଧ କଲେ । ବେଜଲଗେଟ୍‌ଙ୍କୁ ଚାରିପଟୁ ଲୋକ ଘେରି ଯାଇଥିବାରୁ ସେ କୌଣସି ଆଡ଼କୁ ଯିବାକୁ ବାଟ ପାଇଲେ ନାହିଁ । ଏଣେ ଅର୍ଜୁନ ଗଉଡ ଦୁଇହସ୍ତ ପ୍ରସାରି ଅଟକାଇ ଥିବାରୁ ସାହେବ ଆତ୍ମମନରେ ଆଶଙ୍କା କଲେ । ଏଣୁ ସେ ବାଧହୋଇ ପିସ୍ତଲରୁ ଗୁଳି ଫାଏର କଲେ । ଫଳରେ ସାମନାରେ ଠିଆ ହୋଇଥିବା ଯୁବକ ଅର୍ଜୁନ ଗଉଡ ଗୁଳି ରେଟରେ ଟଳି ପଡିଲା । ଏହାପରେ ସାହେବ ଅନ୍ୟ ଏକ ଗୁଳି ଫାଏର କଲେ । ଏହି ଗୁଳି ନାଥ ଭୋଳର କାନରେ ବାଜି ପୁନର୍ବାର ଅର୍ଜୁନ ଗଉଡର ବକ୍ଷଭେଦ କଲା । ପିଚ୍ ପିଚ୍ ରକ୍ତସ୍ରାବ ଦେଖି ଉପସ୍ଥିତ ଜନତାର ରକ୍ତ ଗରମ ହୋଇ ଉଠିଲା । ଫଳରେ ଉତ୍ତ୍ୟକ୍ତ ଜନତା ଭଣ୍ଡାରି ସାହି ବମ୍ବା ଚଢ଼ିଆଣିଙ୍କ ଦ୍ୱାରଠାରେ ବେଜଲଗେଟ୍‌ଙ୍କୁ ପିଟି ପିଟି ମାରିଦେଲେ ।

୧୯୩୯ ମସିହା ଜାନୁୟାରୀ ୫ତାରିଖ ପୌଷ ପୂର୍ଣ୍ଣିମା ଦିନ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସମୂହର ରାଜ ପ୍ରତିନିଧି ବେଜଲଗେଟ୍‌ଙ୍କର ରଣପୁର ପ୍ରଜାଙ୍କ ଠେଙ୍ଗା ମାଡରେ ମୃତ୍ୟୁ ହେଲା । ଏହାଥିଲା ତତ୍କାଳୀନ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସର ଅଭୂତପୂର୍ବ ଘଟଣା, କାରଣ ପୂର୍ବରୁ ଘଟିଥିବା କୌଣସି ବିପ୍ଳବରେ ବ୍ରିଟିଶ ସୈନ୍ୟବାହିନୀର ମେଜର ଭଳି ଉଚ୍ଚ ପଦସ୍ଥ ଅଫିସରଙ୍କୁ ହତ୍ୟା କରାଯାଇ ନଥିଲା । ମେଜର ବେଜଲଗେଟ୍‌ଙ୍କ ମୃତ୍ୟୁ ଓଡିଶାର ଏକ କ୍ଷୁଦ୍ର ଗଡ଼ଜାତରେ ଘଟିବା ପରେ ଓଡିଆମାନେ ଭୀରୁ ବୋଲି ସର୍ବଭାରତୀୟ ସ୍ତରରେ ଯେଉଁ ଅପବାଦ ଥିଲା ତାହା ଦୂରୀଭୂତ ହୋଇଥିଲା । ଏ ପ୍ରସଙ୍ଗରେ ତତ୍କାଳୀନ ପଲିଟିକାଲ ଡିପାର୍ଟମେଣ୍ଟର ରେସିଡେଣ୍ଟ କର୍ଣ୍ଣେଲ ବାର୍ଟନ ସାହେବ ଡଃ ହରେକୃଷ୍ଣ ମହତାବଙ୍କୁ କହିଥିଲେ, "ଆମେ ଯଦି ଜାଣିଥାନ୍ତୁ ଓଡିଶା ଲୋକେ ଏତେ ହିଂସ୍ର, ତେବେ ନିଶ୍ଚିତଭାବେ ଏକ ସୈନ୍ୟବାହିନୀ ପଠାଇ ଥାଆନ୍ତୁ ।"

# ପଞ୍ଚମ ଅଧ୍ୟାୟ

## ବେଜଲଗେଟ୍ ହତ୍ୟା ପରେ

ବେଜଲଗେଟ୍ ମୃତ୍ୟୁ ପରେ ଶାସନକଳ ଅଚଳ ହେଲା । ରାଜା ଅଚେତନ ହୋଇ ପଡ଼ିଲେ । ହବାକର ପରିଡ଼ା, ରଘୁନାଥ ମହାନ୍ତି, ଦୟାନିଧି ପରିଡ଼ା, ଅଗାଧି ବରାଡ଼, ମଦନ ମୋହନ ଦାଶ ପ୍ରମୁଖଙ୍କ ନେତୃତ୍ୱରେ ବିରାଟ ଜନ ସମୁଦ୍ର "ବନ୍ଦୀ ମାନଙ୍କୁ ମୁକ୍ତ କର" ଧ୍ୱନି ଦେଇ ଜେଲଖାନା ଆଡ଼କୁ ମାଡ଼ି ଚାଲିଲେ । ଏହା ଦେଖି ଜେଲର ଗୋଲବ୍ ଲାଲ ପ୍ରମାଦ ଗଣିଲେ । ସେ ଭୟଭୀତ ହୋଇ କୃପାସିନ୍ଧୁ ମିଶ୍ରଙ୍କ ସମେତ ୧୩ଜଣ ବନ୍ଦୀଙ୍କୁ ଖଲାସ କଲେ ।

ବେଜଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ ପ୍ରବଳ ପ୍ରତାପୀ ବ୍ରିଟିଶ ସରକାର ରଣପୁର ବାସୀଙ୍କ ଉପରେ ପ୍ରତିଶୋଧ ନେବାର ଆଶଙ୍କା ଥିବାରୁ ଡ଼ଃ ହରେକୃଷ୍ଣ ମହତାବଙ୍କ ପରାମର୍ଶରେ ସମଗ୍ର ରଣପୁରର ଆବାଳ ବୃଦ୍ଧ ବନିତା ନିଜ ନିଜର ଘରଦ୍ୱାର ଓ ଧନ ସମ୍ପତ୍ତିର ମାୟାମୋହ ପରିତ୍ୟାଗ କରି ନିକଟସ୍ଥ ଖୋର୍ଦ୍ଧା ଖାସ୍ମାହାଲ, ନୟାଗଡ଼ ଓ ଖଣ୍ଡପଡ଼ା ରାଜ୍ୟରେ ଆଶ୍ରୟ ନେଇଥିଲେ । ପ୍ରାଣଭୟରେ ସମଗ୍ର ରାଜ୍ୟର ଜନସାଧାରଣ ରାଜ୍ୟଛାଡ଼ି ଚାଲିଯିବା ମଧ୍ୟ ସ୍ୱାଧୀନତା ସଂଗ୍ରାମ ଇତିହାସର ଏକ ଅଭିନବ ଘଟଣା ।

ବେଜଲଗେଟ୍ ହତ୍ୟାକାଣ୍ଡ ପରେ ରଣପୁରରେ ଚାଲିଲା ବ୍ୟାପକ ଗିରଫଦାରି ଓ ଅମାନୁଷିକ ତାଣ୍ଡବଲୀଳା । ପ୍ରଜାମଣ୍ଡଳର ନେତାମାନଙ୍କୁ ଅଭିସନ୍ଧିମୂଳକଭାବେ ଅଭିଯୁକ୍ତ କରିବା ପାଇଁ ଷଡ଼ଯନ୍ତ୍ର ଚାଲିଲା । ଫଳରେ ସିପାହୀ ହମିଦ୍ ଖାଁ ବେଜଲଗେଟ୍ ହତ୍ୟା ପରେ ଥାନାରେ ଏତଲା (F.I.R) ଦେଇଥିଲେ । ଏହି ହତ୍ୟାକାଣ୍ଡର ତଦନ୍ତ କରିବା ପାଇଁ ଓଡ଼ିଶାର ଖ୍ୟାତନାମା ସି. ଆଇ. ଡି. ଇନସପେକ୍ଟର ବାବୁ ମନବୋଧ ପଣ୍ଡା ଓ ସବ୍ ଇନସପେକ୍ଟର ଶ୍ରୀ ଗଙ୍ଗାଧର ତ୍ରିବେଦୀ ନିଯୁକ୍ତ ହେଲେ ।

ରଣପୁରର ବିଭିନ୍ନ ଅଞ୍ଚଳରୁ ୧୦୪ଜଣ ପ୍ରଜାମଣ୍ଡଳର ସଂଗଠକ ଓ ସମର୍ଥକ ଏକ ମହାଜନ ରାଜ ଦରବାରକୁ ଭୟ ପ୍ରଦର୍ଶନ ପୂର୍ବକ ରାଜବାଟୀ ସାମନାରେ ସମବେତ ହୋଇ ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ ବୋଲି ରାଜଦ୍ରୋହ ଅପରାଧରେ ଭାରତୀୟ ପିନାଲ କୋର୍ଡ଼ର ୧୨୪ ଓ ୧୨୪ (କ)

ଦଫାରେ ମୋକଦ୍ଦମା ହେଲା । ଏହା ବ୍ୟତୀତ ସେମାନଙ୍କ ଉପରେ ହତ୍ୟା ମୋକଦ୍ଦମା ଓ ନାନାପ୍ରକାର ମିଥ୍ୟା ଆଳରେ ମୋକଦ୍ଦମା ଦାଏର ହେଲା । ରଣପୁର ପୋଲିସ ପକ୍ଷରୁ ବିଭିନ୍ନ ବ୍ୟକ୍ତିଙ୍କ ବିରୁଦ୍ଧରେ ଯେଉଁ ରିପୋର୍ଟ ଦିଆଯାଇଥିଲା ତା'ର ଏକ ଅବିକଳ ନକଲ ପାଠକଙ୍କ ଅବଗତି ନିମନ୍ତେ ପ୍ରଦାନ କଲି ।

To

The Highness the Rajah & Ruler,
(Through the Dewan and District Magistrate of
Ranpur state)

ଧର୍ମାବତାର,

ନିବେଦ୍ୟ ଏହିକି ଗତ ତା ୫।୧।୧୯୩୯ରିଖ ଦିନ ମଦନ ମୋହନ ଦାଶ ସା-ନାଟିମି, ରଘୁନାଥ ମହାନ୍ତି, ସା-ବାଦଭୂଇଁ, ଦିବାକର ପଣ୍ଡା, ସା-ଗଡ଼ବାଣିକିଲୋ ଓ ଅଗାଧୁ ବରଡ଼, ସା-ରାଜନଗର କିଲ୍-ରଣପୁର ମାନେ ରଣପୁର କିଲ୍‌ର ବଦମାସ ମେଳିଆ ଶ୍ରେଣୀର ପ୍ରଜାମାନଙ୍କ ସହିତ ନିଜ ଗଡ ମଧ୍ୟରେ ପଶି ଓଡିଶା ଗଡଜାତ ସମୂହର ଶ୍ରୀଯୁକ୍ତ ବେଜିଲଗେଟ୍ ବାହାଦୂରଙ୍କୁ ଅତି ଜଘନ୍ୟ ଓ ନୃଶଂସ ଭାବେ ହତ୍ୟାକରି ସାହେବ ବାହାଦୁରଙ୍କ ସାହାଯ୍ୟାର୍ଥେ ତାଙ୍କ ସଙ୍ଗେ ଥିବା ପୁଲିସ୍ କର୍ମଚାରୀଙ୍କୁ ଗୁରୁତର ଭାବେ ଘାଘାତକ ଜଖମ କରି ସାରିଲେ ପରେ ରାଜବାଟୀର ସମ୍ମୁଖ ଘୋଷରା ପାହାଚ ପାଖରେ ବେଆଇନ ଜନତାରେ ମିଳିତ ହୋଇ ପୂର୍ବରୁ ସ୍ୱତନ୍ତ୍ର ସ୍ୱତନ୍ତ୍ର ମୋକଦ୍ଦମାରେ ଗିରଫ ହୋଇ ଜେଲ କଷ୍ଟୋଡିରେ ଥିବା ଅପରାଧି ମୁଦାଲ୍ କୃପାସିନ୍ଧୁ ମିଶ୍ର, ଗଦାଧର ସାହୁ, ଚିନ୍ତାମଣି ମହାପାତ୍ର ସା-ନିଜଗଡ, କ୍ଷେତ୍ର ସାହୁ ସା-ଗୌରାଙ୍ଗପୁର ଓ ଆନନ୍ଦ ବେହେରା ସା-ଶୃନ୍ଦପୁର ଓଗେର ୧୩ଜଣଙ୍କୁ ଏହିକ୍ଷଣି ଖଲାସ କରିଦିଅ । ନଚେତ ରାଜବାଟୀ ଆକ୍ରମଣ କରି ଧ୍ୱଂସ କରିବୁ । ରାଜକର୍ମଚାରୀ ମାନଙ୍କୁ ହତ୍ୟା କରିବୁ ଓ ଜେଲ ଫାଟେରି ଓ ଦରଜା ଭାଙ୍ଗି ଅପରାଧିମାନଙ୍କୁ ଖଲାସ କରିଦେବୁ— ଏହିପରି ଭୀତପ୍ରଦ ବାକ୍ୟମାନ ଉତ୍ତେଜିତ ବାକ୍ୟମାନ ପ୍ରକାଶ କରି ଶ୍ରୀ ଶ୍ରୀ ଶ୍ରୀ ରାଜ ସରକାରଙ୍କୁ ଭୟ ପ୍ରଦର୍ଶନ କରାଇ କୃପାସିନ୍ଧୁ ମିଶ୍ର ଓଗେର ଉପରୋକ୍ତ ମୁଦାଲ୍‌ମାନଙ୍କୁ ଜେଲମଧ୍ୟରୁ ଖଲାସ କରାଇ ଆଣିଲେ । ତତ୍‌ପରେ କୃପାସିନ୍ଧୁ ମିଶ୍ର ଓଗେରମାନେ ଜେଲରୁ ଆସି ରାଜବାଟୀ ସାମନାରେ ଏକତ୍ରୀତ ହୋଇଥିବା ଅପର ମୁଦାଲାମାନଙ୍କ ସହିତ

ମିଳିତ ହୋଇ ବେଆଇନ ସଭା ମଧ୍ୟରେ ବକ୍ତୃତା କଲେ ଯେ ବେଜଲଗେଟ୍ ସାହେବ ଢେଙ୍କାନାଳରେ ଯେପରି ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିଥିଲେ ଆଜି ତାହାର ଉପଯୁକ୍ତ ପ୍ରତିଫଳ ପାଇଅଛନ୍ତି - ଏହାହିଁ ଆମ୍ଭମାନଙ୍କର ପରମ ଲକ୍ଷ୍ୟ ଥିଲା । ଦେଓ୍ୱାନ୍ ଚଣ୍ଡେ ମିଶ୍ର କୃପାସିନ୍ଧୁ ମିଶ୍ରଙ୍କୁ ମୂର୍ଖ ବୋଲି କହେ ଏବେ କୃପାସିନ୍ଧୁ ମିଶ୍ର ମୂର୍ଖ କି ଚଣ୍ଡେ ମିଶ୍ର ମୂର୍ଖ ବେଶ୍ ଜଣାପଡ଼ୁଥିବ । ବାକି କେତେଟା ରାଜ କର୍ମଚାରୀ ଡାକ୍ତର ଓଗେରଙ୍କୁ ଦେଖି ଦେଇଥିଲେ ଭଲ ହୋଇଥାନ୍ତା । ଆଚ୍ଛା ଏ ବିଷୟ ପରେ ବିଚାର କରାଯିବ । ବର୍ତ୍ତମାନ ଆଜିକାର କାର୍ଯ୍ୟ ସମ୍ବନ୍ଧରେ ଆମ୍ଭମାନଙ୍କର ବିଶେଷ ବିଚାର ଅଛି । ଏଣୁ ଏ କଲର ସମସ୍ତ ପ୍ରଜାମାନଙ୍କୁ ବୁଝାଇ ଦିଅ ଯେ ସମସ୍ତେ ଆଜି ରାତି ପାହିବା ପୂର୍ବରୁ ଗପୁର କଲ୍ଲାକୁ ପିଲାକୁଟୁମ୍ବ ସହିତ ଚାଲି ଯାଆନ୍ତୁ । ଆମ୍ଭେମାନେ ମଧ୍ୟ ସଙ୍ଗେ ସଙ୍ଗେ ଯାଉଅଛୁ । ଖାସମାହାଲର ଅପର କଂଗ୍ରେସ ନେତାମାନଙ୍କ ସହିତ ପରାମର୍ଶ କରି ଯାହା କରିବାକୁ ହେବ ତାହା ବୁଝାଇ ଦିଆଯିବ । ଏହିପରି ବକ୍ତୃତାମାନ ଦେଇ କୃପାସିନ୍ଧୁ ମିଶ୍ର ଓଗେରେ ସମସ୍ତ ମୁଦାଲାମାନଙ୍କ ପ୍ରରୋଚନାରେ ସମସ୍ତ ପ୍ରଜାମାନେ ରାତି ପାହିବା ପୂର୍ବରୁ ନିଜ ନିଜ ଘର ତାଲା ଦେଇ ଯେ ଯେଉଁଆଡ଼େ ଚାଲିଗଲେ । ଏ କଲର କେବଳ ରାଜ କର୍ମଚାରୀ ଓ କେତେକ ରାଜଭକ୍ତ ପ୍ରଜାଙ୍କ ବ୍ୟତୀତ ଆଉ କେହି ରହିଲେନାହିଁ ।

ଶ୍ରୀଯୁକ୍ତ ପଲିଟିକାଲ ଏଜେଣ୍ଟ ବେଜଲଗେଟ୍ ସାହେବଙ୍କର ହତ୍ୟା ଅତ୍ୟନ୍ତ ଗୁରୁତର ଘଟଣା ଥିବା ହେତୁ ତତ୍ ସମ୍ବନ୍ଧେ ଦଣ୍ଡ ବିଧାନ ଆଇନର ଦଫା ୩୦୨/୧୪୭ ମୋକଦ୍ଦମା ତଦନ୍ତ କରାଯାଉଥିବାରେ ଉକ୍ତ ମୋକଦ୍ଦମାର ତଦନ୍ତକାରୀ ଅଫିସରକୁ ଅଧିକ ତଦନ୍ତ କାର୍ଯ୍ୟରେ ସାହାଯ୍ୟ କରି ଆସୁଥିବା ଯୋଗୁଁ ଓ ଉକ୍ତ ମୋକଦ୍ଦମାର ଚାର୍ଜସିଟ୍ ଅଦ୍ୟ କୋର୍ଟରେ ଦାଖଲ ହେବାରୁ ଜଣାଗଲା ଯେ ଯେଉଁ ମୁଦାଲାମାନେ ଉପରୋକ୍ତ ଅପରାଧରେ ଅପରାଧୀ ସେମାନଙ୍କ ବିରୁଦ୍ଧେ ଚାର୍ଜସିଟ୍ ଦାଖଲ ହୋଇଅଛି । ବାକି ସେହି ମୁଦାଲା ମାନଙ୍କ ସହିତ ଯେଉଁ ଅପର ମୁଦାଲାମାନେ ଶତାଧିକ ସଂଖ୍ୟାରେ ଏକତ୍ରିତ ହୋଇ ବେଆଇନ ଜନତା ଦଳରେ ରାଜବାଟୀ ଆକ୍ରମଣ କରି ଧ୍ୱଂସ କରିବା ଓ ରାଜ କର୍ମଚାରୀମାନଙ୍କ ଠାରୁ ଜବରଦସ୍ତ ମୁକୁଳାଇ ଆଣିଥିବା ପ୍ରଭୃତି ଅପରାଧ କରିଥିବା ଯୋଗେ ସେମାନଙ୍କ ବିରୁଦ୍ଧେ ଦଣ୍ଡବିଧି ଆଇନର ଦଫା ୧୨୪, ୧୨୪ (କ) ମୋକଦ୍ଦମା ଦାଏର ଓ ବିଚାର ଆବଶ୍ୟକ ହେବା ମାତ୍ରେ ଶ୍ରୀ ଶ୍ରୀ ଶ୍ରୀ ମହାରାଜାଙ୍କର ଶ୍ରୀ ଶ୍ରୀ ହୁକୁମ ବିନା ଅନୁମତିରେ ଏହା ହୋଇ ନପାରେ ।

ଏଣୁକରି ଅସ ରିପୋର୍ଟ ଶ୍ରୀ ଶ୍ରୀ ଶ୍ରୀ ମହାରଜାଙ୍କର ଶ୍ରୀ ଶ୍ରୀ ଛାମୁରେ ଆଗତ କରି ଜଣାଉଅଛୁ କି ତପସିଲମତେ ମେଳିଆ ମୁଦାଲ୍ମାନଙ୍କ ବିରୁଦ୍ଧେ ଦଣ୍ଡବିଧି ଆଇନ୍‌ର ଦଫା ୧୨୪, ୧୨୪ (କ) ମୋକଦ୍ଦମା ଦାଏର ହେବା ପ୍ରତି ବିହିତ ଆଜ୍ଞା ପ୍ରଦାନ ହେଉ । ତା ୯।୨।୧୯୩୯

## ତପସିଲ

| | | |
|---|---|---|
| ୧ । | ରାଧା ମୋହନ ଦାସ | ସା-ବାଙ୍କପୁର |
| ୨ । | କମଳ ଲୋଚନ ପ୍ରଧାନ | ସା- ” |
| ୩ । | ଗୌରାଙ୍ଗ ପ୍ରଧାନ | ସା- ” |
| ୪ । | ନୀଳକଣ୍ଠ ସାନ୍ତରା | ସା-ପାଟବେରଣା |
| ୫ । | ଉଦ୍ଧବନାଥ ସ୍ବାଇଁ | ସା-ତାରିଆ |
| ୬ । | ତାରେଶ୍ବର ପରିଡ଼ା | ସା-ତାରିଆ |
| ୭ । | କୃଷ୍ଣ ସ୍ବାଇଁ | ସା- ” |
| ୮ । | ଭାଗବତ ସ୍ବାଇଁ | ସା- ” |
| ୯ । | ରାମଚନ୍ଦ୍ର ମିଶ୍ର ଓରଫ ପ୍ରହରାଜ | ସା-ନଜଗଡ |
| ୧୦ । | ବଂଶୀଧର ପଟ୍ଟନାୟକ | ସା- ” |
| ୧୧ । | ବନମାଳୀ ସାହୁ | ସା- ” |
| ୧୨ । | ନାରଣ ଖଟେଇ | ସା- ” |
| ୧୩ । | ନାଥ ମହାନ୍ତ | ସା- ” |
| ୧୪ । | ରଘୁନାଥ ବିଶ୍ବାଳ | ସା- ” |
| ୧୫ । | ଉଦ୍ଧବ ପାଇକରା | ସା- ” |
| ୧୬ । | ମଦନ ମୋହନ ବର୍ଦ୍ଧନ | ସା- ” |
| ୧୭ । | ଦାମ ସେନାପତି | ସା- ” |
| ୧୮ । | ବାଞ୍ଛା ବେହେରା | ସା- ” |
| ୧୯ । | ଖିରି ଷଡ଼ଙ୍ଗୀ | ସା- ” |
| ୨୦ । | ବୃନ୍ଦାବନ ମହାପାତ୍ର | ସା- ” |
| ୨୧ । | କପିଳ ନାଥ ରଣା | ସା- ” |
| ୨୨ । | ବାଙ୍କ ସ୍ବାଇଁ | ସା- ” |
| ୨୩ । | ବାସୁ ବିଶ୍ବାଳ | ସା- ” |

| | | |
|---|---|---|
| ୨୪ । | ବିଦ୍ୟାଧର ଜେନା | ସା-ନଳଗଡ |
| ୨୫ । | ବାନାମ୍ବର ଦାସ | ସା- " |
| ୨୬ । | ଜଗନ୍ନାଥ ନନ୍ଦ | ସା- " |
| ୨୭ । | ରାଧାମୋହନ ମହାପାତ୍ର | ସା- " |
| ୨୮ । | କୃପାସିନ୍ଧୁ ମିଶ୍ର | ସା- " |
| ୨୯ । | ଗଦାଧର ସାହୁ | ସା- " |
| ୩୦ । | ଚିନ୍ତାମଣି ମହାପାତ୍ର | ସା- " |
| ୩୧ । | ଝଲି ମହାରଣା | ସା- " |
| ୩୨ । | ନଟ ନାଏକ | ସା- " |
| ୩୩ । | ଦିବାକର ପରିଡ଼ା | ସା-ଗଡ଼ବାଣୀକିଲେ |
| ୩୪ । | ଅଟାମ୍ବୁ ବରାଜ | ସା-ରାଜନଗର |
| ୩୫ । | ଉଦ୍ଧବ ପ୍ରଧାନ | ସା-ବଗଲ୍ |
| ୩୬ । | ଲୋକନାଥ ପ୍ରଧାନ | ସା- " |
| ୩୭ । | ଦିଗମ୍ବର ରଥ | ସା-ଆମ୍ବଝର |
| ୩୮ । | ତ୍ରିଲୋଚନ ରାଉତରା | ସା-ଗିରିଧରପୁର |
| ୩୯ । | ରଘୁନାଥ ମହାନ୍ତି | ସା-ବାଦଭୂଇଁ |
| ୪୦ । | ମୁରଲୀଧର ପଣ୍ଡା | ସା-ମୟୂରଝାଳିଆ |
| ୪୧ । | କୃଷ୍ଣଚନ୍ଦ୍ର ରାଉତ | ସା- " |
| ୪୨ । | ଚଣ୍ଡି ସାହୁ | ସା- " |
| ୪୩ । | କିଶୋର ରାଉତ | ସା- " |
| ୪୪ । | ନାରାୟଣ ଦାଶ | ସା-କୁଳାସର |
| ୪୫ । | କୁବେର ସ୍ୱାଇଁ | ସା ନରେନ୍ଦ୍ରପୁର |
| ୪୬ । | ଅରକ୍ଷିତ ପ୍ରଧାନ | ସା- " |
| ୪୭ । | ମଦନ ମୋହନ ଦାସ | ସା ନାଟିମି |
| ୪୮ । | ଦୀନବନ୍ଧୁ ନାଏକ | ସା-ଲୋଧାଚୂଆ |
| ୪୯ । | ଦଧି ନାୟକ | ସା- " |
| ୫୦ । | ଚଣ୍ଡି ପରିଡ଼ା | ସା- " |
| ୫୧ । | ନରସିଂହ ମହାରଣା | ସା- " |
| ୫୨ । | ଅରକ୍ଷିତ ଗନ୍ତାୟତ | ସା-ଚମ୍ପତିପୁର |

| | | |
|---|---|---|
| ୫୩ । | ସନେଇ ସାମନ୍ତରାୟ | ସା-ଚମ୍ପତିପୁର |
| ୫୪ । | ହରେକୃଷ୍ଣ ପାତ୍ର | ସା- ,, |
| ୫୫ । | କୁଞ୍ଜ ପାତ୍ର | ସା-କର୍କିଆ |
| ୫୬ । | ଗଦାଧର ଖଣ୍ଡାୟତରାୟ | ,, |
| ୫୭ । | ରାମ ସାହୁ | ସା-ଗୌରାଙ୍ଗପୁର |
| ୫୮ । | କ୍ଷେତ୍ର ସାହୁ | ,, |
| ୫୯ । | ଯୋଗି ଦଳବେହେରା | ସା-କୋଳଥିଙ୍ଗି |
| ୬୦ । | ଦୀନବନ୍ଧୁ ଦୋର | ,, |
| ୬୧ । | ଲେଙ୍କା ବରାଡ଼ | ସା-ଗୋବିନ୍ଦପୁର |
| ୬୨ । | ଦୋଳ ପରିଡ଼ା | ସା-ସାନ ବରମୂଳ |
| ୬୩ । | ଲେଙ୍କା କାଣ୍ଡି | ,, |
| ୬୪ । | ଭାଗେ ବେହେରା | ,, |
| ୬୫ । | ନନ୍ଦ ରଣା | ସା ପିମ୍ପଳ |
| ୬୬ । | ଗୋପି ଦାସ | ସା-ପାଇକେରାପୁର |
| ୬୭ । | ରଘୁନାଥ ବେହେରା | ସା-ସୁନାଟେଳା |
| ୬୮ । | ଅର୍ଜୁନ ହଦ | ,, |
| ୬୯ । | ନାରଣ ସିଂହ | ,, |
| ୭୦ । | ମାଗି ନାଏକ | ସା-ରଘୁନାଥପୁର |
| ୭୧ । | ହରିହର ବରାଡ଼ | ସା-ବାଳପାଟଣା |
| ୭୨ । | ବଡ଼ ଗଦାଧର ସାହୁ | ସା-ହୁର୍କାବାଡ଼ |
| ୭୩ । | ଖଡ଼ ମହାପାତ୍ର | ,, |
| ୭୪ । | ସର୍ବେଶ୍ୱର ପ୍ରଧାନ | ସା ଜାମୁ ସାହି |
| ୭୫ । | କୃଷ୍ଣଚନ୍ଦ୍ର ପ୍ରଧାନ | ,, |
| ୭୬ । | ବାଞ୍ଛାନିଧି ବରାଡ଼ | ସା-ଗୋବର୍ଦ୍ଧନପୁର |
| ୭୭ । | ସେକ୍ ଯୋଗି | ସା-ନଳପଲ୍ଲୀ |
| ୭୮ । | ହରିହର ମହାନ୍ତ | ,, |
| ୭୯ । | ବସିରୁଦ୍ଦିନ୍ ଖାଁ | ସା-ଗଡ଼ବାଣୀକିଲେ |
| ୮୦ । | ରଘୁ ନାଏକ | ସା-ପାଟବେରଣା |
| ୮୧ । | ରାମନାଥ ଜେନା | ସା-କେନ୍ଦୁବଣିଆ |

| | | |
|---|---|---|
| ୮୨ । | ରଘୁନାଥ ଜେନା | ସା-କେନ୍ଦୁ ବଣିଆ |
| ୮୩ । | ଲିଙ୍ଗରାଜ ରାୟ | ସା-ଲଡାରି |
| ୮୪ । | ବଂଶୀଧର ପଟ୍ଟନାୟକ | ,, |
| ୮୫ । | ମାର୍କଣ୍ଡ ପ୍ରଧାନ | ,, |
| ୮୬ । | ଆନନ୍ଦ ବେହେରା | ସା-ଗୁନ୍ଦପୁର |
| ୮୭ । | ଘନ ମହାପାତ୍ର | ସା-ଜେମାଦେଈପୁର |
| ୮୮ । | ବଂଶୀଧର ମହାପାତ୍ର | ,, |
| ୮୯ । | ନଟବର ପ୍ରଧାନ | ସା-କନ୍ଧନୟାଗଡ଼ |
| ୯୦ । | ଗିରିଧର ସାହୁ | ସା-ଜେମାଦେଈପୁର |
| ୯୧ । | ଅନ୍ତର୍ଯ୍ୟାମି ସାହୁ | ସା-କଣ୍ଡରସିଙ୍ଗି |
| ୯୨ । | ନରସିଂହ ସାହୁ | ,, |
| ୯୩ । | ଦୟାନିଧି ପରିଡ଼ା | ସା-ତେଲିପାଟଣା |
| ୯୪ । | ଚୈତନ୍ୟ ନାୟକ | ସା-ମହିଆଖଣ୍ଡ |
| ୯୫ । | ଭୈରବ ପ୍ରଧାନ | ସା-ମଧୁପୁର |
| ୯୬ । | ବାଙ୍କ ସ୍ୱାଇଁ | ସା-ଲକ୍ଷ୍ମୀନାରାୟଣପୁର |
| ୯୭ । | ଭଇଗ ଜେନା | ସା-ମାର୍ଥାପଦର |
| ୯୮ । | ଅଗାଧୁ ମହାପାତ୍ର | ସା-ରାମଚନ୍ଦ୍ରପୁର |
| ୯୯ । | କେଳୁଚରଣ ଷଡ଼ଙ୍ଗୀ | ,, |
| ୧୦୦ । | ବଇଦ୍ୟଧର ମିଶ୍ର | ସା-ନଜଗଡ |
| ୧୦୧ । | ଅନନ୍ତ ନାଏକ | ସା-ସାନଗଡ଼ ଲୋଧାସାହି |
| ୧୦୨ । | କୁଞ୍ଜ ନାଏକ | ,, |
| ୧୦୩ । | ବାଲଗି ନାଏକ ଓରଫ ବେହା | ସା-ନଜଗଡ |
| ୧୦୪ । | ଖ୍ୟାମ ବାଉରୀ | ସା-ପାମ୍ପଡ଼ା |

ଏମିବାଏ ଅପର ମେଳିଆ ମୁଦଲମାନେ ଅଛନ୍ତି ତଦନ୍ତରେ ସେହି ମାନଙ୍କ ନାମ ପ୍ରକାଶ ପାଇବ ।

Sd – Illigible
Sub-Inspector of police

I am satisfied that a case in respect of the offenders mentioned in this report ought to be started. But as the initiation of the case U/s 124 & 124 (A) I.P.C. require special sanction of the Durbar U/S 126 I.P.C. necessary order may kindly be passed.

Submitted to the Ruler
Sd–Illigible 9. 2. 39
Dewan, Ranpur State

S. I of police, Raj Ranpur is authorised to start a case U/S- 124 & 124 (A) I.P.C against the persons named in the report.

Sd–K. C. Singhdeo
Rajah and Ruling Chief
Ranpur State

ଥାନାରୁ ଅଭିଯୋଗ ଆସିବା ପରେ ଉପର୍ଯ୍ୟୁକ୍ତ ୧୦୪ ଜଣଙ୍କ ବିରୁଦ୍ଧରେ ମୋକଦ୍ଦମା ଦାଏର ହୋଇଥିଲା । ଏହା ବ୍ୟତୀତ ବହୁ ଲୋକଙ୍କୁ ବିଭିନ୍ନ ପର୍ଯ୍ୟାୟରେ ଅଭିଯୁକ୍ତ କରାଯାଇ ହଇରାଣ ହରକତ କରାଯାଉଥିଲା । ସ୍ୱ.ର ଅର୍ଜୁନ ରାଉତ ସ୍ୱାଧୀନତା ସଂଗ୍ରାମୀ ସଙ୍ଘର ସମ୍ପାଦକ ଶ୍ରୀ ସଦାଶିବ ସାହୁଙ୍କ ଠାରୁ ମିଳିଥିବା ଏକ ବିବରଣୀରୁ ନିମ୍ନଲିଖିତ ୮୨ ଜଣଙ୍କ ବିରୁଦ୍ଧରେ ଅଭିଯୋଗ ଆସିଥିବା ଜଣାପଡେ ।

୧ । ସଦାଶିବ ସାହୁ — ରାଜ-ସୁନାଖଳା
୨ । ଜଗନ୍ନାଥ ସାହୁ — ,,
୩ । ବେଣୁଧର ସାହୁ — ,,
୪ । ରାଘବ ସ୍ୱାଇଁ — ନରେନ୍ଦ୍ରପୁର
୫ । ଛତି ମହାପାତ୍ର — ସୁର୍କବାଡି
୬ । ଗୁରୁବାର ସାହୁ — ରାଜ ସୁନାଖଳା
୭ । ପଦ୍ମଲଭ ସାହୁ ,,
୮ । ମଧୁ ସାହୁ — ରମାବଲ୍
୯ । ଶ୍ୟାମ ସାହୁ — ବଧୂପାଟଣା

୧୦ । ଅନନ୍ତ ସାହୁ — ନରେନ୍ଦ୍ରପୁର
୧୧ । ବାନାମ୍ବର ସୁବୁଦ୍ଧି — ରାଜ-ସୁନାଖଳା
୧୨ । ସଦାଶିବ ସାହୁ — ରାଜସୁନାଖଳା
୧୩ । ଗଙ୍ଗାଧର ସୁବୁଦ୍ଧି — ରାଜ-ସୁନାଖଳା
୧୪ । ସଦାଶିବ ମହାରଣା — ରାଜ ସୁନାଖଳା
୧୫ । ବୈଷ୍ଣବ ସାହୁ — ରମାବଲ
୧୬ । ଲକ୍ଷ୍ମଣ ସାହୁ — ସୁର୍କାବାଡ
୧୭ । ଚନ୍ଦ୍ରଧର ମହାପାତ୍ର — ସୁର୍କାବାଡ
୧୮ । ଯୋଗୀନାଥ ବାରିକ — ରାଜ-ସୁନାଖଳା
୧୯ । ରାଜକିଶୋର ମହାରଣା — ନରେନ୍ଦ୍ରପୁର
୨୦ । ଲୋକନାଥ ସାହୁ — ନରେନ୍ଦ୍ରପୁର
୨୧ । ଭିକାରୀଚରଣ ସାହୁ — ରାଜ-ସୁନାଖଳା
୨୨ । ଗୌରାଙ୍ଗ ସାହୁ — ରାଜ-ସୁନାଖଳା
୨୩ । ରଘୁନାଥ ପ୍ରଧାନ — ନରେନ୍ଦ୍ରପୁର
୨୪ । ନୀଳମଣି ସାହୁ — କୁଳାସର
୨୫ । ମହାଦେବ ମହାରଣା — କୁଳାସର
୨୬ । ନାରାୟଣ ସାହୁ — ରାଜନଗଡ଼
୨୭ । ପଞ୍ଚୁ ମହାନ୍ତି — ଆରଡ଼ା
୨୮ । ନିତ୍ୟାନନ୍ଦ ସାହୁ — ମୟୂରଝଳିଆ
୨୯ । ରାମଚନ୍ଦ୍ର ମହାରଣା ,,
୩୦ । ପଞ୍ଚୁ ମହାରଣା ,,
୩୧ । ଗୁରୁବାର ବାରିକ ,,
୩୨ । ଜଗନ୍ନାଥ ମହାନ୍ତି — ନରସିଂହପୁର
୩୩ । ଭୀମ ବିଳସ — ମୟୂରଝଳିଆ
୩୪ । ଲକ୍ଷ୍ମଣ ସାହୁ — ନରସିଂହପୁର
୩୫ । ନିମାଇଚରଣ ପ୍ରଧାନ — ରାଜ ଜଙ୍କିଆ
୩୬ । ଈଶ୍ୱର ବଳଆରସିଂହ — ବାମଡ଼ା
୩୭ । ଜଳଧର ପରିଡ଼ା — ନିହାଲ ପ୍ରସାଦ
୩୮ । ଧରଣୀଧର ସୁନ୍ଦରାୟ — ବଗଲ

୩୯। ପ୍ରହ୍ଲାଦ କଳସ — ମୟୂରଝଲିଆ
୪୦। ବଂଶୀଧର ଛନରା — ରାଜ-ସୁନାଖଳା
୪୧। ଭ୍ରମର ସାହୁ — ନାଚିମ୍
୪୨। ଭିକାରି ଚଇନ — ନନ୍ଦଲ ପ୍ରସାଦ
୪୩। ଷାଉ ଟାଣ — କୃଷ୍ଣଚନ୍ଦ୍ରପୁର
୪୪। କାଶୀନାଥ ସାହୁ — ମୟୂରଝଲିଆ
୪୫। ରାମ ସାହୁ — ସାମନ୍ତସିଂହାରପୁର
୪୬। ରଘୁନାଥ ସାହୁ — ଅନ୍ଧାରୁଆ
୪୭। ବାସୁଦେବ ଲେଙ୍କା — ବାଙ୍କପୁର
୪୮। ଦାଶରଥି ଜେନା ,,
୪୯। ଅନ୍ତର୍ଯ୍ୟାମୀ ସାମନ୍ତରା ,,
୫୦। ବିଶ୍ୱମ୍ଭର ସାମନ୍ତରାୟ — ବାଙ୍କପୁର
୫୧। ନାରାୟଣ ନାୟକ ,,
୫୨। ନିତ୍ୟାନନ୍ଦ ଭୂଜବଳ ,,
୫୩। ଅର୍ଜ୍ଜୁନ ମତା ,,
୫୪। ମଦନ ପରିଡା — ନନ୍ଦଲପ୍ରସାଦ
୫୫। ଗୋବନ୍ଦ ମହାପାତ୍ର — ଜୋକ ଗାଡିଆ
୫୬। ଇନ୍ଦ୍ରଜିତ ଭୂଜବଳ — ବାଙ୍କପୁର
୫୭। ଦୟାନିଧି ସ୍ୱାଇଁ — ଗୋଳାପୋଖରୀ
୫୮। ଅରକ୍ଷିତ ପ୍ରଧାନ ,,
୫୯। ଜଗନ୍ନାଥ ବଷୋଇ — ମୟୂରଝଲିଆ
୬୦। ଲିଙ୍ଗରାଜ ସାହୁ — ରାଜ ସୁନାଖଳା
୬୧। ହରିହର ପରିଡା ସାମନ୍ତ — ନରସିଂହପୁର
୬୨। କ୍ଷେତ୍ରବାସୀ ମହାପାତ୍ର — ରଣପୁର ଗଡ
୬୩। ଅଭିରାମ ବଳିଆରସିଂହ — ରାଜ ଜଙ୍କିଆ
୬୪। ଭ୍ରମର ସ୍ୱାଇଁ ,,
୬୫। କାଶୀନାଥ ରଣବଜୁଳ ,,
୬୬। ଭ୍ରମର ପଲେଇ ,,
୬୭। ସୁବଳ ମାଝି ,,

୬୮ । କୁବେର ସ୍ୱାଇଁ — ରାଜ ଚଙ୍କିଆ
୬୯ । ଉଦୟନାଥ ମାଝି ,,
୭୦ । ଦୁଃଖିଶ୍ୟାମ ବଶ୍ୱାଳ ,,
୭୧ । ଚକ୍ରୁ ରାଉତ — ମୟୂରଝଳିଆ
୭୨ । ଶ୍ରୀନାଥ ମହାପାତ୍ର — ରଣପୁର ଗଡ
୭୩ । ଅନନ୍ତ ନାୟକ ,,
୭୪ । ଅଗାଧୁ ଥାଟୋଲ୍ ,,
୭୫ । ନୀଳକଣ୍ଠ ବଶ୍ୱାଳ — ଖଇରପଲ୍ଲୀ
୭୬ । ଗଦାଧର ମହାପାତ୍ର — ସାନଗଡ଼
୭୭ । ଯୁଗଳକିଶୋର ପଟ୍ଟନାୟକ - ନବଦନପୁର
୭୮ । ଗୋପୀନାଥ ଦାସ - ବଳଭଦ୍ରପୁର
୭୯ । ପ୍ରାଣନାଥ ରାଉତ — ମୟୂରଝଳିଆ
୮୦ । ବୃନ୍ଦାବନ ବସ୍ତୁଗୁରୁ — ରଣପୁର ଗଡ଼
୮୧ । ଦୀନବନ୍ଧୁ ସାହୁ ,,
୮୨ । ଲୋକା ଦାଶ ,,

ବେଜଲଗେଟ୍ ହତ୍ୟାକାଣ୍ଡ ଘଟଣା ସମଗ୍ର ଭାରତରେ ଦୋହଲ ପକାଇଥିଲା । ଅହିଂସା ଆନ୍ଦୋଳନର ପ୍ରବର୍ତ୍ତକ ମହାମାନବ ମହାତ୍ମା ଗାନ୍ଧୀ ହତ୍ୟାକାଣ୍ଡ ଯୋଗୁଁ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ତାଙ୍କଦ୍ୱାରା ସମ୍ପାଦିତ ପୁନାରୁ ପ୍ରକାଶିତ 'ହରିଜନ' ପତ୍ରିକାରେ ତା ୧୪।୧।୧୯୩୯ ଖ୍ରୀରେ " Most unfortunate " ଶୀର୍ଷକରେ ଏହା ପ୍ରକାଶ ପାଇଥିଲା । ଏହା ନିମ୍ନରେ ଉଲ୍ଲେଖ କଲି ।

" The murder of Major R. L. Bazalgatte the political Agent of Orissa States is most unfortunate and comes as a rude shock. I tender my sympathy to the bereaved family. I hope that the Subedar, who accompanied the deceased, will recover from the wounds. The Prajamandal is expected to carry on the strickest investigation and fired out the cause of the murder. It should be a warning to all workers to be most careful in conducting mass agitations. They should realise that the slightest departure from non-violence is bound to harm the movement for freedom, whether in the State or all India."

"ହରିଜନ" ପତ୍ରିକାରେ ତା ୨୧।୧।୧୯୩୯ ସଂଖ୍ୟାରେ "Violence Vrs Non-Violence" ଶୀର୍ଷକ ଏକ ଲେଖା ପ୍ରକାଶ ପାଇଲା । ସେଥିରେ ବେଜଲଗେଟ୍ ହତ୍ୟାକାଣ୍ଡ ଘଟଣା ଉପରେ ଆଧାରିତ ଗାନ୍ଧିଜୀଙ୍କ ମତାମତକୁ ଆହ୍ୱାନ କରି ଓଡ଼ିଶାର ନବକୃଷ୍ଣ ଚୌଧୁରୀଙ୍କ ମତାମତ ସ୍ଥାନ ପାଇଥିଲା । ତାହା ନିମ୍ନରେ ପ୍ରଦାନ କଲି ।

" Everywhere in India there is a duel going on between the method of non-violence and that of violence. Violence like water, when it has an outlet, rushes forward furiously with an overwhelming force. Non-violence can not act madly. It is the essence of discipline. But when it is set going, no amount of violence can crush it. For full play, it requires unsullied purity and an unequenchable faith among the leaders. Therefore, if non-violence seems to fail in the duel, it will do so because the leaders lack the purity or the faith or both. There seems, however to be reason to believe that non-violence will triumph over violence. Things seem to be shaping so that the workers will see for themselves to futility of violence."

But a well-known public worker writes :—
(ଏହି public worker ଜଣକ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ବୋଲି ଡଃ ମହତାବଙ୍କ ଠାରୁ ଲେଖକ ଜାଣିବାକୁ ପାଇଛି)

"The state method of dealing with Satyagrah to be different from the British method. The methods adopted in some states are too in human and brutal. Will non-violence succeed against 'such brutal methods ? Is it not permissible for us to defend the honour and respect of our women ? The ordinary law of the land gives us that right. Then why should we not exercise that right, when we are fighting such a brutal and in human machinery ? I would like to be enlightened on those points

I have carefully read and re-read your views on the murder of the Political Agent of Orissa States. I was rather pained to find that you made no reference to the terrible atrocites committed on the poor subjects of Orissa. Is not the murder of the Political Agent a divine warning to the States Authorities to be more merciful in dealing with the people's fights ? After all, in between the

state subjects and the Political Department, who deserves our sympathy more ? If the mob was wrong in using violence against the Political Agent, was the latter justified in firing on the mob and thus provoking them to violence ? And what about the terrible repression for which the Political Agent was responsible ? I agree with you that the murder of the Political Agent is unfortunate but who is responsible for it ? If the ruling chiefs of Orissa had been properly advised and led by the Political Agent, and if he had not been party to the terrible repression, certainly the people would not have gone out of control.

I agree with you that the event should be a warning to all of us who are conducting a mass movement in the state. But I fail to understand why you as the greatest apostle of truth and non-violence should not have also conveyed a warning to the Political Department of the Government of India, and especially the Eastern States Agency that they should not adopt brutal methods in dealing with the states subjects fights ? I feel that the Eastern States Agency has been most brutal in dealing with the states subjects fights and the murder of the Political Agent in the climax of the brutal repression carried on by the Eastern States Agency. Indeed it is unfortunate, but the Political Agent himself was responsible for this. And if we are to show sympathy for the loss of life of the Political Agent, what about the two persons who died on the spot as a result, possibly of the police violence. If the victims of violence deserve our sympathy as the victims of mob violence ? To me it looks that the Bazellegette murder is a warning first and foremost to the Government of India and the Political Department and also to the ruling chiefs and then to us."

ବେଜଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ **F.I.R.** ରେ ନାମଥିବା ୧୦୪ ଜଣଙ୍କୁ ପୋଲିସ ପକ୍ଷରୁ ଖୋଜା ଚାଲିଲା । ଫଳରେ ରଘୁନାଥ ମହାନ୍ତି, ଦିବାକର ପଣ୍ଡା, ଦୟାନିଧି ପରିଡ଼ା, ହଟ ନାୟକ, ମାଗି ନାୟକ, ବାଙ୍କା ସ୍ୱାଇଁ, କୃଷ୍ଣଚନ୍ଦ୍ର ରାଉତ ଅନ୍ତର୍ଯ୍ୟାମୀ କଳସ ପ୍ରମୁଖ ବିଦ୍ରୋହୀମାନେ ଗିରଫ ହେଲେ । କେତେକ କର୍ମୀ ଆତ୍ମ ସମର୍ପଣ କରିଥିଲେ ।

ରଣପୁର ପ୍ରଜାମଣ୍ଡଳର କର୍ମୀମାନଙ୍କୁ ଗିରଫ ପରେ ପରେ ଓଡ଼ିଶା ପ୍ରଜାମଣ୍ଡଳର ଉପଦେଷ୍ଟା ଡ଼ଃ ହରେକୃଷ୍ଣ ମହତାବଙ୍କୁ ଏହି ହତ୍ୟା ଷଡଯନ୍ତ୍ରରେ

ଅଭିଯୁକ୍ତ କରାଯିବାର ବନ୍ଦୋବସ୍ତ କରପାଇଥିଲ । ସି.ଆଇ.ଡି. ଇନସପେକ୍ଟର ବାବୁ ମନବୋଧ ପଣ୍ଡା କଟକ ଯାଇ ଡଃ ମହତାବଙ୍କୁ ୧୬୧ ସି. ଆଇ. ଧାରା ଅନୁଯାୟୀ ସାକ୍ଷ୍ୟ ଗ୍ରହଣ କରିଥିଲେ । ଡଃ ମହତାବ ଏଥିରେ ଅଭିଯୁକ୍ତ ହେଉଥିବା ଜାଣିପାରି ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟି ଆକର୍ଷଣ କଲେ । ଗାନ୍ଧିଜୀ ବ୍ରିଟିଶ ପାର୍ଲାମେଣ୍ଟ ସଦସ୍ୟା ମିସ୍ ଆଗାଥା ହେରିସନ୍‌ଙ୍କୁ କଟକ ପଠାଇଲେ । ସେ ଏଠାରେ ରେଭେନ୍ୟୁ କମିଶନର ଏନସର୍ଜ ସାହେବ, ଗଭର୍ଣ୍ଣର ଓ ପଲିଟିକାଲ ଡିପାର୍ଟମେଣ୍ଟର ଅଫିସର ମାନଙ୍କୁ କହି ଡଃ ମହତାବଙ୍କୁ ରକ୍ଷା କରିଥିଲେ । ମୋକଦ୍ଦମା ପାଇଁ ପୋଲିସ୍‌ର ଚାର୍ଜସିଟ୍ ପ୍ରସ୍ତୁତ କରିବାରେ ସି ଆଇ ଡି. ଇନସପେକ୍ଟର ଶ୍ରୀ ଉପେନ୍ଦ୍ର ପଟ୍ଟନାୟକ ଓ ସବ୍-ଇନସପେକ୍ଟର ଶ୍ରୀ ଗଙ୍ଗାଧର ଦ୍ୱିବେଦୀ ସହଯୋଗ କରିଥିଲେ ।

ପୋଲିସ୍‌ର ଚାର୍ଜସିଟ୍ ପ୍ରସ୍ତୁତ ପରେ ବିଚାର ଆରମ୍ଭ ହେଲା । ଚାର୍ଜସିଟ୍‌ରେ ମୋକଦ୍ଦମାର ଦଫା ଅନୁଯାୟୀ ବିଚାର ପତିଙ୍କ କ୍ଷମତା ଅନୁସାରେ ମୋକଦ୍ଦମା ଗୁଡିକ ବଣ୍ଟନ ହୋଇଥିଲା । ସର୍ବଶ୍ରୀ ମାନ୍ୟବର ବି. ସି. ପଟ୍ଟନାୟକ, ସ୍ୱତନ୍ତ୍ର ମାଜିଷ୍ଟ୍ରେଟ, ରଣପୁର, ମାନ୍ୟବର ଶିବ ରମଣ, ଦୌରା ଜଜ୍, ମାନ୍ୟବର ଏସ. କେ. ଦାସଗୁପ୍ତ, ଦୌରାଜଜ୍, ମାନ୍ୟବର ଜେ. ଜି. ସିଅରର, I C.S. ସ୍ୱତନ୍ତ୍ର ଦୌରା ଜଜ୍‌ଙ୍କ ଇଜଲାସରେ ବିଚାର ହୋଇଥିଲା । ଉପରୋକ୍ତ ବିଚାରପତିମାନେ ରଣପୁରରେ କ୍ୟାମ୍ପ କରି ବିଚାର କରିଥିଲେ । ରଘୁ ଓ ଦିବାକର ଉପରେ ୨୩ ଜଣଙ୍କ ବିଚାର ବିହାର ପ୍ରଦେଶ ଗୟା ଜିଲ୍ଲାର ଗୋରା ଦୌରା ଜଜ୍ ଜେ. ଜି. ସିଅରର I.C.S ଙ୍କ ଅଦାଲତରେ ପଡିଥିଲା । ସରକାରଙ୍କ ପକ୍ଷରୁ ରାୟ ବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟ ଏମ୍. ଏ. ବି. ଏଲ ଓ ବିଶ୍ୱେଶ୍ୱର ମହାନ୍ତି ଏବଂ ମୁଦାଲାମାନଙ୍କ ପକ୍ଷରୁ ଅବ୍ଦୁଲ ହାଫିଜ୍, ଗଦାଧର ଜେନା ଓ ପୀତାମ୍ବର ସାହୁ ପ୍ରମୁଖ ଓକିଲ ମୋକଦ୍ଦମା ଲଢ଼ୁଥିଲେ । ଏହି ବିଚାରରେ ସର୍ବଶ୍ରୀ ବାବୁ ଯୁଗଳ କିଶୋର ରାୟ, ବାବୁ କୃଷ୍ଣଚନ୍ଦ୍ର ମିଶ୍ର, ବାବୁ ଗୋପୀନାଥ ସିଂହଦେଓ ଓ ବାବୁ ବାସୁଦେବ ମହାପାତ୍ର ପ୍ରମୁଖ ବିଚାରପତିଙ୍କ ସାହାଯ୍ୟକାରୀ ଭାବେ ନିଯୁକ୍ତ ପାଇଥିଲେ ।

ସ୍ୱତନ୍ତ୍ର ଦୌରାଜଜ୍ ମାନ୍ୟବର ଏସ୍. କେ. ଦାସଗୁପ୍ତାଙ୍କ ଇଜଲାସ୍‌ରେ ସର୍ବଶ୍ରୀ ମଦନ ମୋହନ ଦାଶ, ମୁରଲୀଧର ପଣ୍ଡା, ଦୟାନିଧି ପରିଡା, ଗୋପୀ ରଣା, ବନମାଳୀ ସାହୁ ଓ ବିଶ୍ୱନାଥ ଚନ୍ଦ୍ରଙ୍କ ବିରୁଦ୍ଧରେ I P S ୧୪୭, ୩୦୨/୩୪ ଓ ୩୦୨/୧୪୯ ଦଫାରେ ମୋକଦ୍ଦମା ହୋଇଥିଲା । ଏଥିରେ

ସରକାରଙ୍କ ପକ୍ଷରୁ ରାୟ ବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ଏମ୍. ଏ. ବି. ଏଲ୍., ପବ୍ଲିକ ପ୍ରସିକ୍ୟୁଟର ଓ ମୁଦାଲମାନଙ୍କ ପକ୍ଷରୁ ସର୍ବଶ୍ରୀ ରାଧାଶ୍ୟାମ ମହାନ୍ତି, ଯଦୁମଣି ପଟ୍ଟନାୟକ ଓ ମୋହିନୀ ମୋହନ ଦାସ ପ୍ରମୁଖ ଓକିଲ ମୋକଦ୍ଦମା ଲଢ଼ିଥିଲେ । ବିଚାରପତିଙ୍କ ସାହାଯ୍ୟକାରୀ ଭାବେ ସର୍ବଶ୍ରୀ ବ୍ରଜ କିଶୋର ସିଂହ ମର୍ଦ୍ଦରାଜ, ଗଣେଶ୍ୱର ମହାପାତ୍ର, ମଦନ ମୋହନ ପ୍ରଧାନ ଓ ଜଗନ୍ନାଥ ପାତ୍ର ଥିଲେ ।

ସ୍ୱତନ୍ତ୍ର ଦୌରାଜଜ୍ ମାନ୍ୟବର ଜେ. କେ. ମିଅରରଙ୍କ ଇଜଲାସରେ ୧୫ ଜଣଙ୍କ ବିରୁଦ୍ଧରେ ବେଜଲଗେଟ୍ ହତ୍ୟାକାଣ୍ଡ ଅଭିଯୋଗରେ ମୋକଦ୍ଦମା ହୋଇଥିଲା । ସେମାନେ ହେଲେ (୧) ରଘୁନାଥ ମହାନ୍ତି, ବୟସ ୨୮ ବର୍ଷ ପି- ନଟବର ମହାନ୍ତି ଗ୍ରାମ-ବାଦଭୂଇଁ (୨) ଦିବାକର ପଣ୍ଡା ବୟସ ୨୭ ବର୍ଷ ପି ହରି ପଣ୍ଡା ଗ୍ରାମ-ଗଡ଼ ବାଣୀକିଲେ (୩) ମାଗି ନାୟକ, ବୟସ ୬୦ ବର୍ଷ ପି-ଜଗନ୍ନାଥ ମହାପାତ୍ର ଗ୍ରାମ-ରଘୁନାଥପୁର (୪) ଭଗବାନ ସାହୁ ବୟସ ୩୨ ବର୍ଷ ପି ଧନା ସାହୁ ଗ୍ରାମ-ତେଲିପାଟଣା (୫) କୃଷ୍ଣଚନ୍ଦ୍ର ରାଉତ ବୟସ ୩୮ ବର୍ଷ ପି-ପିତବାସ ରାଉତ ଗ୍ରାମ ମୟୂରଝଲିଆ (୬) ଭଗବତୀ ବେହେରା, ବୟସ ୩୫ ବର୍ଷ ପି ଗୋପି ବେହେରା ଗ୍ରାମ ତେଲିପାଟଣା (୭) ରଘୁ ଦୃଷ୍ଟି, ବୟସ ୫୦ ବର୍ଷ ପି କାର୍ତ୍ତିକ ଦୃଷ୍ଟି ଗ୍ରାମ ଲୋଧାଚୁଆ (୮) ହାଟ ନାୟକ, ବୟସ ୪୦ ବର୍ଷ ପି-ଧନା ନାୟକ ଗ୍ରାମ ରଣପୁର ଗଡ଼ (୯) ଚିନ୍ତା ନାୟକ ବୟସ ୬୫ ବର୍ଷ ପି-ସଇନ୍ତା ସାମନ୍ତରା ଗ୍ରାମ ଲୋଧାଚୁଆ (୧୦) ଚକ୍ରଧର ରାଉତ ବୟସ ୪୫ ବର୍ଷ ପି-ରଘୁ ବଳିଆରସିଂହ ଗ୍ରାମ ଲୋଧାଚୁଆ (୧୧) ବାଙ୍କ ସ୍ୱାଇଁ ବୟସ ୩୫ ବର୍ଷ ପି-ବୈଷ୍ଣବ ମହାପାତ୍ର ଗ୍ରାମ ଲକ୍ଷ୍ମୀନାରାୟଣପୁର (୧୨) ନରସିଂହ ସାହୁ ବୟସ ୨୮ ବର୍ଷ, ପି-ବନ୍ଧୁ ସାମନ୍ତରା ଗ୍ରା କଣ୍ଡରା ସିଂ (୧୩) ଅନ୍ତର୍ଯ୍ୟାମୀ କଳସ ବୟସ ୪୮ ବର୍ଷ, ପି-ଦାସ କଳସ ଗ୍ରା ମୟୂରଝଲିଆ (୧୪) କାଶୀ ରାଉତ ବୟସ ୨୫ ବର୍ଷ ପି-ଲୋକନାଥ ରାଉତ ଗ୍ରା ଲୋଧାଚୁଆ (୧୫) ସେବକ ଦୃଷ୍ଟି ବୟସ ୨୦ ବର୍ଷ ପି-ରଘୁ ଦୃଷ୍ଟି ଗ୍ରା ଲୋଧାଚୁଆ ।

ମୋକଦ୍ଦମାରେ ମୁଦାଲମାନଙ୍କୁ ସାହାଯ୍ୟ କରିବା ପାଇଁ ଡଃ ମହତାବଙ୍କ ପ୍ରେରଣାରେ ଏକ ଡିଫେନ୍ସ କମିଟି ଗଠନ କରାଯାଇଥିଲା । ପ୍ରାଣନାଥ ପଟ୍ଟନାୟକ ଏହାର ସଭାପତି ଓ ଗଙ୍ଗାଧର ପାଇକରାୟ ସମ୍ପାଦକ ଥିଲେ । ଏହି କମିଟି ଓଡ଼ିଶା ତଥା ଓଡ଼ିଶା ବାହାରୁ ଆର୍ଥିକ ସାହାଯ୍ୟ ଆଣି ମୋକଦ୍ଦମା ଖର୍ଚ୍ଚ ତୁଲାଉଥିଲେ ।

J. G. Shearer, Esq special sessions Judge ଙ୍କ କୋର୍ଟରେ ହୋଇଥିବା Judgementର ନକଲ ପାଠକଙ୍କ ଅବଗତି ନିମନ୍ତେ ନିମ୍ନରେ ପ୍ରଦାନ କଲି ।

IN THE COURT OF THE SPECIAL SESSIONS JUDGE
RANPUR STATE, RANPUR

Case No S. T. I. C. of 1939, Ranpur

Ranpur State.........Vrs.........Raghunath Mohanty & 23 others
Section of the Indian Penal Code on other law :

120-B, 147, 302, 302/34, 302/149, 325, 325/149, I.P.C.
Date of the decision of the original Court :
1st day of June, 1939.

## JUDGEMENT

The 1st June, 1939

Judgement could not be ready on the 29th May 1939 owing to the sessions Judge having involved in a motor accident.

Judgement delivered acquitting Agadhu Barad, Chaitan Chinara, Nath Kalas, Baidhar Mahapatra, Bidya Sahoo, Achut Das, Bansidhar Patnaik and Anand Rout and sentencing the other 16 accused as below.

Accused Chinta Naik, Chakra Rout, Raghu Prusti, Bhobani Prusti and Kashi Rout are convicted U/Sec. 120-B, I.P.C. and sentenced to undergo Rigorous imprisonment for two years each.

Accused Magi Naik, Narasing Sahu, Banka Swain, Antar Kalas, Krishna Ceandra Rout. Bhagabat Behera, Bhagaban Sahu, Raghunath Mohanty, Dibakar Parida, Hata Naik, Ceinta Naik and Nate bhol are Convicted U/S .147 I.P.C. and are sentenced to undergo Rigorous Imprisonment for two years each.

Accused Magi Naik, Narasingh Sahu, Banka Swain, Antar Kalas, Krishna Chandra Rout, Bhagabat Behera, Bhagaban Sahu, Raghunath Mohanty, Dibakar Parida, Hata Naik and Chinta Naik are further convicted U/Sec. 302 and 325 read with Sec. 149 and U/Sec 325 read with Sec. 149 I.P.C. are sentenced to uudergo

rigorous imprisonment for four (4) years each with exception of Chinta Naik, these men are convicted U/Sec. 302 read with Sec. 34 I.P.C. Acoused Hata Naik, Bhagabat Behera, Krishna Chandra Rout, Antar Kalas, Banka Swain, Bhagaban Sahu, Magi Naik and Narasingh Sahu are sentenced to transportation for life.

Accused Raghunath Mohanty, Dibakar Parida, and Chinta Naik are senteneed to be hanged by the neck until they are dead.

Accused Chakra Rout is acquitted on the charge .U/Sec 323 I.P.C. and Raghu Prusti on the charge U/Sec 326 I.P.C. These two (2) men are also acquitted on the charge U/Sec 147 and Sec. 302 and 325 read with Sec 149 and Sec. 34 I.P.C.

A sentenced imposed U/Sec 120-B will run consecutively with any other sentence while all other sentences will run concurrently. Accused persons are informed that if they wish to prefer on appeal they may do so within 7 days.

The record will be laid before the High Court for confirmation of sentence of death and also of the sentence of transportation for life as I understand that in the state .sentences exceeding seven years imprisonment require to be confirmed.

Witness Raghu Behera was noticed to show cause on 29-5-39 and on 31-5-39 why he should not be prosecuted U/Sec, 193 I.P.C. He neither did appear nor showed any .cause. It is not necessary to issue any further notice to him and complaint will now be made.

A complaint U/Sec. 193 I.P.C. against witness Bihari Sahu put up, signed and forwarded to the Ranpur Durbar for taking cognizance of it.

**Sd— G. G. Shearer** 2-6-39
SESSIONS JUDGE

ଉପରୋକ୍ତ ରାୟ ପ୍ରକାଶ ପାଇବା ପରେ ଚିନ୍ତା ନାଏକ ଅପିଲ କରି ଫାଶି ଦଣ୍ଡରୁ ମୁକ୍ତିଲାଭ କଲେ କିନ୍ତୁ ରଘୁ ଦିବାକରଙ୍କ ଫାଶି ଦଣ୍ଡାଦେଶ ପୂର୍ବ ଭଳି କାଏମ ରହିଲା ।

### ରଘୁ-ଦିବାକର ଫାଶି –

ଫାଶି ନିଷ୍ପତ୍ତି ପରେ ଯେତେବେଳେ ରଣପୁର ଠାରୁ ରଘୁ ଦିବାକରଙ୍କୁ ବିହାରର ଭାଗଲପୁର ଜେଲକୁ ନିଷ୍ଠୁର ପୋଲିସ୍ ମାନେ ନେଉଥିଲେ,

ସେତେବେଳେ ରଣପୁରଠାରୁ କାଳୁପଡା ପର୍ଯ୍ୟନ୍ତ ୧୫ମାଇଲ ବ୍ୟାପି ରାସ୍ତାରେ ହଜାର ହଜାର ନରନାରୀ ଅଶ୍ରୁପୂର୍ଣ୍ଣ ନୟନରେ ଭଳେ ଲେଟି ପଡଥିଲେ । ରଣପୁରର ଦୂର ଦୂରାନ୍ତ ଗ୍ରାମରୁ ଗର୍ଭବତୀ ସ୍ତ୍ରୀଙ୍କ ଠାରୁ ଆରମ୍ଭ କରି ବୃଦ୍ଧ ବୃଦ୍ଧା ପର୍ଯ୍ୟନ୍ତ ସେହି ବୀର ସନ୍ତାନ ରଘୁ ଦିବାକରଙ୍କ ଶେଷ ଦର୍ଶନ ପାଇଁ ଧାଇଁ ଆସିଥିଲେ । ସେ ଦୃଶ୍ୟ ଥିଲା ମର୍ମସ୍ପର୍ଶୀ ଓ ହୃଦୟ ବିଦାରକ କରୁଣ ଦୃଶ୍ୟ । ବିପ୍ଳବୀ ଦ୍ୱୟଙ୍କୁ ଟ୍ରେନ ଯୋଗେ କାଳୁପଡାଠାରୁ ଭାଗଲପୁର ଜେଲକୁ ନିଆଗଲା । ୧୯୪୧ ମସିହା ଅପ୍ରେଲ ୪ତାରିଖ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ସେମାନେ ଦେଶ ପାଇଁ ହସି ହସି ଫାଶୀ ବରଣ କଲେ ।

ରଣପୁର ପ୍ରଜା ଆନ୍ଦୋଳନ ସମଗ୍ର ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଡିନୋଟି ନୂତନ ଅଧ୍ୟାୟ ସୃଷ୍ଟି କରିଛି । ପ୍ରଥମତଃ ମେଜର ଭଳି ବ୍ରିଟିଶ୍ ସୈନ୍ୟବାହିନୀର କୌଣସି ଉଚ୍ଚ ପଦସ୍ଥ ଅଫିସର ଏହା ପୂର୍ବରୁ ପ୍ରଜାଙ୍କ ଦ୍ୱାରା ନିହତ ହୋଇ ନଥିଲେ ।

ଏହା ଥିଲା ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସର ଏକ ଯୁଗାନ୍ତକାରୀ ଅଧ୍ୟାୟ । ଜଣେ ପଦସ୍ଥ ଗୋରା ସେନାପତିଙ୍କ ମୃତ୍ୟୁରେ କେବଳ ଭାରତ ନୁହେଁ, ବ୍ରିଟିଶ୍ ଦରବାର ଥରହର ହୋଇଥିଲା । ଦ୍ୱିତୀୟତଃ ମେଜର ବେଜଲଗେଟ୍‌ଙ୍କ ମୃତ୍ୟୁରେ ସମଗ୍ର ରାଜ୍ୟର ପ୍ରଜାଗଣ ନିଜ ନିଜର ଘରଦ୍ୱାର ଓ ସମ୍ପତ୍ତିର ମାୟା ମୋହ ପରିତ୍ୟାଗ କରି ଅନ୍ୟ ରାଜ୍ୟରେ ଆଶ୍ରୟ ନେବା ଏବଂ ପ୍ରତିଶୋଧ ନେବାକୁ ବ୍ରିଟିଶ ଫଉଜ ଆସି ପ୍ରଜାଙ୍କୁ ଖୋଜି ନପାଇ ଫେରିଯିବା ଥିଲା ଏକ ଅଦ୍ୱିତୀୟ ଘଟଣା । ତୃତୀୟତଃ ଦୁଇଜଣ ବିପ୍ଳବୀ ରଘୁ ଓ ଦିବାକର ଏକ ସମୟରେ ଫାଶୀବରଣ କରିବା ମଧ୍ୟ ଥିଲା ଅନ୍ୟ ଏକ ଅସାଧାରଣ ଘଟଣା । ଗଡଜାତ ପ୍ରଜା ଆନ୍ଦୋଳନରେ ଫାଶୀ ବରଣ କରିବାରେ ରଘୁ ଦିବାକର ପ୍ରଥମ ଓଡିଆ ।

ସେନାଧ୍ୟକ୍ଷ ମେଜର ବେଜଲଗେଟ୍‌ଙ୍କ ହତ୍ୟା ବ୍ରିଟିଶ ସରକାରଙ୍କୁ ଯେଉଁଭଳି ଉଦ୍‌ବିଗ୍ନିତ କରାଇଥିଲା । ଅନ୍ୟ କୌଣସି ଘଟଣାରେ ଏଭଳି ହୋଇ ନଥିଲା । ସେତେବେଳେ ଇଂଲଣ୍ଡରେ ଜାତୀୟ ଦଳ ଶାସନ ଦାୟିତ୍ୱରେ ଥିଲେ । ଶ୍ରମିକ ଦଳ ବିରୋଧୀ ଦଳ ଭାବେ କାର୍ଯ୍ୟ କରୁଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମକୁ ଦମନ କରିବା ପାଇଁ ଯେଉଁ ଅକଥନୀୟ ଅତ୍ୟାଚାର କରାଯାଇଥିଲା, ତାହା ଶ୍ରମିକ ଦଳ ପସନ୍ଦ କରୁ ନଥିଲେ । ତେଣୁ ମେଜର ବେଜଲଗେଟ୍‌ଙ୍କ ହତ୍ୟା ଘଟଣା ଉପରେ ଇଂଲଣ୍ଡ ପାର୍ଲାମେଣ୍ଟ ପ୍ରକମ୍ପିତ ହୋଇଥିଲା । ଏହି

ଘଟଣା ନେଇ ବିରୋଧୀ ଦଳ କମ୍ନୋକ୍ତ ପ୍ରଶ୍ନ, ଅନ୍ତତଃ ପ୍ରଶ୍ନମାନ ପଚାରି ସରକାରୀ ଦଳକୁ ବଡ଼ ଅଡୁଆରେ ପକାଇଥିଲେ ।

ପ୍ରଶ୍ନହେଲା – ବେଜଲଗେଟ୍ କ ଭଳି ମଲେ ?

ଉତ୍ତର – ବାମ୍ବୋଷ୍ଟିକ (Bambo stick) ଦ୍ୱାରା ।

ପ୍ରଶ୍ନ – ଏହା କ'ଣ ଷ୍ଟେନ୍‌ଗନ୍ ଠାରୁ ଅଧିକ ଶକ୍ତିଶାଳୀ ?

ଉତ୍ତର – ଏହାର ଉତ୍ତର ବର୍ତ୍ତମାନ ସଂଗ୍ରହ କରାଯାଉଛି ।

ପ୍ରଶ୍ନ – ଏହି ବାମ୍ବୋଷ୍ଟିକ ଆମେ ଦେଖିବାକୁ ଚାହୁଁ । ଶୀଘ୍ର ଏହା ପାର୍ଲିମେଣ୍ଟରେ ପ୍ରଦର୍ଶିତ ହେଉ ।

ଏହି ପ୍ରସ୍ତାବମତେ ରଣପୁର ଜଙ୍ଗଲସ୍ଥ ପାଞ୍ଚଣହ ବାଉଁଶମୂଳ କଟା ଯାଇ ବିଲାତ ପାର୍ଲିମେଣ୍ଟକୁ ପଠାଯାଇଥିଲା । ବିରୋଧୀ ଦଳ ପକ୍ଷରୁ ଜଣେ ସଭ୍ୟ ବଜ୍ର ଗମ୍ଭୀର ସ୍ୱରରେ ପାର୍ଲିମେଣ୍ଟରେ ଘୋଷଣା କଲେ—"The suppressed fillings of an oppressed nation found expression in the murder of Mr. Bazzelgette" (ଏକ ନିଷ୍ପେଷିତ ଜାତିର ରୁଦ୍ଧ ମନୋଭାବ ମେଜର ବେଜଲଗେଟ୍‌ଙ୍କ ହତ୍ୟାରେ ପ୍ରକାଶ ପାଇଛି) । ଠେଙ୍ଗାକୁ ପରୀକ୍ଷା କରିବା ପରେ ବିଲାତବାସୀ ବୁଝିପାରିଲେ ଯେ ମେଜର ବେଜଲଗେଟ୍ ଅକଳଆରେ ପଡ଼ିଥିବା ଯୋଗୁଁ ବନ୍ଧୁକ ଧରି ପାରିଲେ ନାହିଁ । ଫଳରେ ବହୁ ଲୋକ ତାଙ୍କୁ ଠେଙ୍ଗାରେ ପିଟି ପିଟି ମାରିଦେଲେ ।

ବେଜଲଗେଟ୍‌ଙ୍କୁ ମିଳିତଭାବେ ବହୁ ପ୍ରଜା ଠେଙ୍ଗାରେ ପିଟି ପିଟି ମାରିଦେବା ଫଳରେ ଏହି ହତ୍ୟାକାଣ୍ଡକୁ ଇଂରେଜ ଲୋକେ "ନୃଶଂସ ହତ୍ୟା" ନାମରେ ଅଭିହିତ କଲେ । ଫଳରେ ଇଂରେଜ ଭାଷାବିତ୍‌ମାନେ ନୃଶଂସ ହତ୍ୟାକୁ Bazzelgetted ନାମରେ ଅଭିଧାନରେ ଏକ ଶବ୍ଦରୂପେ ବ୍ୟବହାର କଲେ । ଏହାହିଁ ଆନ୍ତର୍ଜାତିକ ଇଂରେଜ ଭାଷାକୁ ରଣପୁରବାସୀଙ୍କର ଚିରନ୍ତନ ଉପହାର ।

ବେଜଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ ରାଜା କୃଷ୍ଣଚନ୍ଦ୍ରଙ୍କ ଠାରୁ ୧୯୪୦ ମସିହାରେ କ୍ଷମତା କାଢ଼ି ନିଆଯାଇଥିଲା । ଫଳରେ ରାଜ୍ୟ Court of wards ହୋଇଥିଲା । ଢେଙ୍କାନାଳ ମାର୍ଥାପୁରର ଶ୍ରୀ ବାମଦେବ ରଥ ଦେଓ୍ୱାନ୍ ହୋଇ ରାଜ୍ୟ ପରିଚାଳନା କରିଥିଲେ ।

ବେଜଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ ରଣପୁରରେ ଅକଥନୀୟ ଦମନଲୀଳା ଚାଲିଥିଲା । ସେତେବେଳେ ଓଡ଼ିଶାରେ କଂଗ୍ରେସ ସରକାର ଶାସନରେ ଥାଏ ଓ ସ୍ୱର୍ଗତ ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ଥାନ୍ତି । କଂଗ୍ରେସ ଦଳ ପକ୍ଷରୁ ବ୍ରିଟିଶ ସୈନ୍ୟବାହିନୀ ପକ୍ଷରୁ ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ପ୍ରତିବାଦ କରାଯାଇଥିଲା । ବେଜଲଗେଟ୍ ହତ୍ୟାକାଣ୍ଡର ମାସକ ପରେ ଅର୍ଥାତ୍ ୧୯୩୯ ମସିହା ଫେବୃୟାରୀ ମାସରେ ଲୁଧିଆନା ଠାରେ ସର୍ବଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ରଣପୁର ଘଟଣାବଳୀ ଉପସ୍ଥାପିତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ଏ ପ୍ରସଙ୍ଗରେ କହିଥିଲେ, "This was an intervention of the most flagrant kind on behalf of the paramount power on the side of tyrany and corrupt administration. Everyone knows some of the states in Orissa are the worst and most degraded of their kind in India."

ବେଜଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ ରଣପୁରବାସୀଙ୍କୁ ବହୁ ନିର୍ଯ୍ୟାତନା କରାଯାଇଥିଲେ ମଧ୍ୟ ରଣପୁର ପ୍ରଜା ସେଥିରେ ଦବି ନଥିଲେ । ସ୍ୱାଧୀନତାର ସୁଖ ସ୍ୱପ୍ନ ସେମାନଙ୍କୁ ବିଭୋର କଲା । ବାସ୍ତବିକ ସୁଖପ୍ରାପ୍ତି ଏବଂ ସୁଖ ଭୋଗ ଅପେକ୍ଷା ସୁଖ ଭୋଗ କରିବାର ଆଶା ଶତଗୁଣେ ସୁଖମୟ, ସହସ୍ରଗୁଣେ ମଧୁମୟ ଲକ୍ଷଗୁଣେ ଅନୁପ୍ରେରଣା ବ୍ୟଞ୍ଜକ ଏବଂ କୋଟିଗୁଣେ ଉତ୍ସାହ-ଉନ୍ମାଦନା-ଶକ୍ତି ସାହସଦାୟକ । ପରାଧୀନତାର ଅନ୍ଧକାର ମଧ୍ୟରେ ସ୍ୱାଧୀନତାର ଝଲକ ସୁଦୂର ଦିଗ୍‌ବଳୟରେ ଆବିର୍ଭୂତ ହେଲା । ରଣପୁରର ଜନତା ଦୃଢ଼ ସଂକଳ୍ପ ନେଇ ପ୍ରଜାମଣ୍ଡଳ ଯଜ୍ଞକୁଣ୍ଡକୁ ପୁନର୍ବାର ଡେଇଁ ପଡ଼ିଲେ । ପ୍ରଜାମାନଙ୍କୁ ନାଗରିକ ଅଧିକାର ଦେବା, ଗଡ଼ଜାତମାନଙ୍କୁ ଓଡ଼ିଶା ପ୍ରଦେଶ ସାଙ୍ଗରେ ମିଶାଇ ଦେବା ଓ ଭାରତର ଶାସନ ବିଧାୟକ ସଭାରେ କେବଳ ପ୍ରଜାମାନଙ୍କ ପ୍ରତିନିଧି ଗ୍ରହଣ କରାଯିବା ଆଦି ବିଭିନ୍ନ ଦାବି ନେଇ ଗୋବିନ୍ଦପୁର ଠାରେ ତା ୩।୧୧।୪୬ ରିଖ ଦିନ ରଣପୁର ପ୍ରଜାମଣ୍ଡଳର ଏକ ବିରାଟ ସମ୍ମିଳନୀ ଅନୁଷ୍ଠିତ ହେଲା ଏଥିରେ ଆଠଗଡ଼ ପ୍ରଜାମଣ୍ଡଳର ସଭାପତି ତଥା 'ସମାଜ'ର ସମ୍ପାଦକ ପଦ୍ମଶ୍ରୀ ଡଃ ରାଧାନାଥ ରଥ ସଭାପତିତ୍ୱ କରିଥିଲେ । ତାଳଚେର ପ୍ରଜାମଣ୍ଡଳର ଶ୍ରୀ ମଦନ ମୋହନ ପ୍ରଧାନ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ।

ଏହି ସମ୍ମିଳନୀରେ ଆଠଗଡ଼ ଷ୍ଟେଟରୁ ଶ୍ରୀ ବ୍ରଜକିଶୋର ପଟ୍ଟନାୟକ, ଢେଙ୍କାନାଳରୁ ଶ୍ରୀ ହରମୋହନ ପଟ୍ଟନାୟକ ଓ ଶ୍ରୀ ଶ୍ରୀବସ୍ତ ନାୟକ, ବଡ଼ମ୍ବାରୁ

ଶ୍ରୀ ପ୍ରଭାତ ଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ବିଦ୍ୟାଧର ନାୟକ, ଟିଗିରିଆରୁ ଶ୍ରୀ ବିପିନ ବିହାରୀ ପଟ୍ଟନାୟକ, ନୟାଗଡ଼ରୁ ଶ୍ରୀ ଶ୍ରୀଧର ଦାଶ, ଶ୍ରୀମତୀ ବୈଦେହୀ ଓ ଲକ୍ଷ୍ମୀ ମହାରଣା, ଖଣ୍ଡପଡ଼ାରୁ ଶ୍ରୀ ରଘୁନାଥ ସିଂହ ସାମନ୍ତ ପ୍ରମୁଖ ଯୋଗ ଦେଇଥିଲେ । ଏହା ବ୍ୟତୀତ ଖୋର୍ଦ୍ଧା ଖାସମହାଲରୁ ସର୍ବ ଶ୍ରୀ ପ୍ରାଣନାଥ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ, ମାଧବଚନ୍ଦ୍ର ରାଉତରାୟ, ପର୍ଶୁରାମ ପଦାତିକ ରାୟ, ନୃସିଂହଚରଣ ସାମନ୍ତ ସିଂହାର, ପର୍ଶୁରାମ ହରିଚନ୍ଦନ ଓ ରାମଚନ୍ଦ୍ର ମଙ୍ଗରାଜ (ସିକୋ) ପ୍ରମୁଖ ଯୋଗଦେଇ ବକ୍ତୃତା ଦେଇଥିଲେ ।

ସ୍ୱାଧୀନତା ସଂଗ୍ରାମରେ ରଣପୁରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରଣପୁରରେ ଘଟିଥିବା ପ୍ରଜାଆନ୍ଦୋଳନ ବ୍ୟତୀତ ରଣପୁରର ଅନେକ ସଂଗ୍ରାମୀ ସେମାନଙ୍କ ପ୍ରବାସୀ ଜୀବନ ବ୍ରହ୍ମଦେଶରେ ଅତିବାହିତ କରୁଥିବା ସମୟରେ ନେତାଜୀ ସୁବାଷଚନ୍ଦ୍ର ବୋଷଙ୍କ ଆହ୍ୱାନରେ ଆଜାଦ୍ ହିନ୍ଦ୍ ଫୌଜ ବାହିନୀରେ ଯୋଗଦେଇ ଦେଶମାତୃକା ପାଇଁ ଲଢ଼ିଥିଲେ । ସେମାନଙ୍କ ସଂଗ୍ରାମ ପାଇଁ ବୀରଭୂମି ରଣପୁର ଗର୍ବ ଅନୁଭବ କରେ । ସମ୍ପ୍ରତି ସେମାନଙ୍କର ଏକ ସଂଘ ଗଠନ କରାଯାଇଛି । ଶହୀଦ ଦିବାକର ପରିଡ଼ାଙ୍କର କନିଷ୍ଠ ଭ୍ରାତା ତଥା ଆଜାଦ୍ ହିନ୍ଦ୍ ଫୌଜ ବାହିନୀରେ ରିକ୍ରୁଟମେଣ୍ଟ ଅଫିସର ରୂପେ କାର୍ଯ୍ୟ କରୁଥିବା ଶ୍ରୀ ଚକ୍ରଧର ପରିଡ଼ା ଏହାର ସଭାପତି ଅଛନ୍ତି ।

ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ସାଧନାର ଫଳ ମିଳିଲା ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ । ଦେଶ ସ୍ୱାଧୀନ ହେଲା । ଏହି ଦିବସରେ ଏକ ପୁରାତନ ଯୁଗର ପରିସମାପ୍ତି ଘଟିବା ସଙ୍ଗେ ସଙ୍ଗେ ଏକ ନୂତନ ଯୁଗର ଅଭ୍ୟୁଦୟ ହେଲା । ଦେଶ ସ୍ୱାଧୀନତା ପାଇଥିବାରୁ ବେଜଲଗେଟ୍ ହତ୍ୟା ମୋକଦ୍ଦମାର ବନ୍ଦୀମାନେ ୧୯।୯।୪୭ ତାରିଖ ଦିନ ବନ୍ଦୀଶାଳରୁ ମୁକ୍ତିଲାଭ କଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ପରାମର୍ଶ କ୍ରମେ ଡଃ ହରେକୃଷ୍ଣ ମହତାବ୍‌ଙ୍କ ନେତୃତ୍ୱରେ ମୟୂରଭଞ୍ଜ ବ୍ୟତୀତ ଓଡ଼ିଶାର ଅନ୍ୟ ସମସ୍ତ ଗଡ଼ଜାତର ୧୯୪୮ ମସିହା ଜାନୁୟାରୀ ପହିଲାରେ ଓଡ଼ିଶା ସହିତ ମିଶ୍ରଣ ହୋଇଥିଲା । ଫଳରେ ସେହିଦିନ ଠାରୁ ରଣପୁର ଓଡ଼ିଶାର ଏକ ଅଂଶ ହୋଇ ରହିଲା ।

ରଣପୁର ବୃହତ୍ତର ଓଡ଼ିଶାରେ ସାମିଲ୍ ହୋଇ ପୁରୀଜିଲ୍ଲା ଅନ୍ତର୍ଗତ ଏକ ତହସିଲରୂପେ ପରିଗଣିତ ହୋଇଛି । ଆଜି ରଣପୁର ସ୍ୱତନ୍ତ୍ର ରାଜ୍ୟ

ହୋଇନାହିଁ କିମ୍ବା ରାଜାଙ୍କର ଶାସନ ନାହିଁ । ରଣପୁରର ସ୍ୱାଧୀନତା ସଂଗ୍ରାମରେ ମୁଖ୍ୟ ଭୂମିକା ଗ୍ରହଣ କରି ଫାଶୀ ବରଣ କରିଥିବା ବିଦ୍ରୋହୀ ଦିବାକର ପରିଡ଼ା ଓ ରଘୁନାଥ ମହାନ୍ତି ଏବଂ ଗୁଳି ଗ୍ରେଟରେ ଶିକାର ହୋଇଥିବା ଅର୍ଜୁନ ରାଉତ ସ୍ୱାଧୀନତାର ସ୍ୱାଦୁ ଉପଭୋଗ କରିବା ପାଇଁ ଇହଧାମରେ ନାହାନ୍ତି । ଏହି ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ଅନେକ ସଂଗ୍ରାମୀ ସେମାନଙ୍କର ଅଙ୍ଗରେ କରୁଣ କାହାଣୀ ବର୍ଣ୍ଣନା କରିବା ପୂର୍ବରୁ ଆମ୍ଭମାନଙ୍କ ପକ୍ଷରୁ ଚିର ବିଦାୟ ନେଇଛନ୍ତି । ସେମାନଙ୍କର ତ୍ୟାଗ, ନିଷ୍ଠା, ସଂଯମ, ସାଧନା, ଦେଶାତ୍ମବୋଧ, ଜାତୀୟତାବୋଧ, ଶୃଙ୍ଖଳାବୋଧ, ଏବଂ ଅଭିନବ ନେତୃତ୍ୱ ଆମ୍ଭମାନଙ୍କୁ ସ୍ୱାଧୀନତା ଆଣିଦେଇଛି । ସେହି ସହୀଦଙ୍କ ଅମର ଆତ୍ମା ସ୍ୱର୍ଗରେ ଥାଇ ସ୍ୱାଧୀନତା ପରେ ଆମ୍ଭେମାନେ ସ୍ୱାଧୀନତାର ସୁଖ କିପରି ଭୋଗ କରୁଛୁ ସେଥିରେ ସେମାନେ ସୁଖୀ କିମ୍ବା ଦୁଃଖୀ ହେଉଛନ୍ତି କିମ୍ବା ସେମାନଙ୍କର ଆତ୍ମା ଶାନ୍ତି ସନ୍ତୋଷ ଭୋଗ କରୁଛନ୍ତି ନା ଅଶାନ୍ତି ଭୋଗ କରୁଛନ୍ତି ତାହା ଆମେ ଜାଣି ପାରୁନାହୁଁ । ସେମାନେ ସମାଜରେ ରାଜତନ୍ତ୍ର ଲୋପ କରି ଶୋଷଣ ବିହୀନ ମାନବ ସମାଜ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । କିନ୍ତୁ ସେମାନଙ୍କ ଆଶା ସଫଳ ହୋଇନାହିଁ । ବର୍ତ୍ତମାନ ସମାଜରେ ଅନ୍ୟାୟ, ଦୁର୍ନୀତି, ବ୍ୟଭିଚାର, ଭ୍ରଷ୍ଟାଚାର, ଆତ୍ମସ୍ୱାର୍ଥ ବର୍ଦ୍ଧନ, ପ୍ରିୟାପ୍ରୀତି ତୋଷଣ, ଅସତ୍ୟ ଓ କାଳିମାର ମାତ୍ର ପ୍ରାଧାନ୍ୟ ଜାହିର କରିଛି ।

ସମାଜର ବହୁ ପରିବର୍ତ୍ତନ ଧାରା ମଧ୍ୟରେ ପରିପୂର୍ଣ୍ଣ ଜୀବନ ପାଇଁ ଅନେକ କିଛି ପୂରଣ କରିବାକୁ ହେବ । ସେମାନଙ୍କ ଆଦର୍ଶରେ ଶୁଦ୍ଧ ପୂତ ଭାବରେ ଆଜିର ଜନତାଙ୍କୁ କଠୋର ଭାବରେ ସଂଗ୍ରାମ କରିବାକୁ ହେବ ଏବଂ କର୍ମକ୍ଷମ ଭାବରେ ଶାନ୍ତି, ଧର୍ମ, ନ୍ୟାୟ, ନିରପେକ୍ଷତା, ପ୍ରାଚୁର୍ଯ୍ୟ ଓ ସାମ୍ୟପାଇଁ ପ୍ରଗାଢ଼ ଉଦ୍ୟମ କରିବାକୁ ହେବ ।

ସାମ୍ପ୍ରତିକ ସମାଜରେ ଅନୈତିକତାର ପ୍ରାଦୁର୍ଭାବ ବୃଦ୍ଧି ପାଉଛି । ଏହାର ମୂଳୋତ୍ପାଟନ କରିବାକୁ ହେବ । ଶିକ୍ଷାନୁଷ୍ଠାନ ହେଉଛି ମଣିଷର ଉଦାର ଚଳଣି, ଆଚାର ସଦ୍‌ବୃତ୍ତି, ଦେଶାତ୍ମବୋଧ ଓ ସାଂସ୍କୃତିକ ଚିନ୍ତନର ଉନ୍ମେଷସ୍ଥଳ । କିନ୍ତୁ ସମାଜର ଆବିଳ ସ୍ରୋତ କ୍ରମଶଃ ବୃଦ୍ଧି ପାଉଥିବାରୁ ଶିକ୍ଷାନୁଷ୍ଠାନ ଓ ଶିକ୍ଷକ ଏହାର କବଳିତ ହେଉଛନ୍ତି । ଅନୈତିକତାର ଶିକାର ହୋଇ ଅନେକ ଧନୀ, ମାନୀ, ଶିକ୍ଷିତ ଏବଂ କ୍ଷମତାପୂର୍ଣ୍ଣ କର୍ମଚାରୀର ଭଦ୍ରଖୋଳ

ନିଜ୍ଞ ନିର୍ବିଘ୍ନର ଓ ନିର୍ବିବାଦରେ ସରକାରୀ ଓ ବେସରକାରୀ ଧନରାଶି ଅସନ୍ତ ଉପାୟରେ ଶୋଷଣ କରିବାରେ ଲିପ୍ତଥିବାବେଳେ ଅନ୍ୟ କେତେକ କୁଶିକ୍ଷା ହେତୁ ନରହତ୍ୟା, ନାରୀଧର୍ଷଣ, ଚୋରି, ଡ଼କାୟତି, ସାମ୍ପ୍ରଦାୟିକ ଦଙ୍ଗା ଓ ରାଷ୍ଟ୍ରଦ୍ରୋହ କାର୍ଯ୍ୟ ଜଘନ୍ୟ ଭାବେ କରି ଚାଲିଛନ୍ତି । ଏସବୁ ଭାରତୀୟ ସଂସ୍କୃତି ବିରୋଧୀ କାର୍ଯ୍ୟର ପରିଚାୟକ । ଏହି ମନୋଭାବକୁ ନିରାକୃତ କରିବା ପାଇଁ ଭାରତୀୟ ନାଗରିକ ମାନଙ୍କର ସମୂହ ଚେଷ୍ଟା ଏକାନ୍ତ ଆବଶ୍ୟକ । ନୈତିକ ଶିକ୍ଷାର ପ୍ରଭାବରେ ଦେଶରେ ଦେଖା ଦେଇଥିବା ଏହି ଜାତୀୟ ସଙ୍କଟ ଦୂର ହେବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ ରାମରାଜ୍ୟ ସ୍ୱପ୍ନ ସାର୍ଥକ ହେବ ଏବଂ ପ୍ରତ୍ୟେକ କଷ୍ଟ ଲବ୍ଧ ସ୍ୱାଧୀନତାର ସ୍ୱାଦୁ ଉପଭୋଗ କରିପାରିବେ ।

# ବ୍ରଜେନ୍ଦ୍ର ଚନ୍ଦ୍ର ସିଂହଦେଓ

## ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସିଂହଦେଓ ବୀରବର ବଜ୍ରଧର ନରେନ୍ଦ୍ର

## ମହାପାତ୍ର-ତା ୨୧।୭।୧୯୪୫ ରୁ ତା ୩୧।୧୨।୪୮

ତା ୨୧।୭।୧୯୪୫ ରେ ରାଜା କୃଷ୍ଣଚନ୍ଦ୍ର ସିଂହଦେଓଙ୍କର ବିୟୋଗ ହେବାରୁ ତାଙ୍କ ପୌତ୍ର ବ୍ରଜେନ୍ଦ୍ର ଚନ୍ଦ୍ର ସିଂହାସନ ଆରୋହଣ କଲେ । କୃଷ୍ଣଚନ୍ଦ୍ର ସିଂହଦେଓଙ୍କ ପୁତ୍ର ବିରଞ୍ଚି ନାରାୟଣ ସିଂହଦେଓ ପୂର୍ବରୁ ପରଲୋକ ଗମନ କରିଥିଲେ । ବ୍ରଜେନ୍ଦ୍ର ଚନ୍ଦ୍ରଙ୍କର ସିଂହାସନ ଆରୋହଣ ବେଳକୁ ୧୭ବର୍ଷ ବୟସ ହୋଇଥିଲା । ତତ୍କାଳୀନ ପଲିଟିକାଲ ଏଜେଣ୍ଟ ଇସକନ୍ଦର ମିର୍ଜା ତାଙ୍କୁ ରଣପୁରର ରାଜାରୂପେ ଅଭିଷେକ କରାଇଥିଲେ । ଶ୍ରୀ ସତ୍ୟେନ୍ଦ୍ର ନାଥ ସେନଗୁପ୍ତ ରଣପୁରର ନୂତନ ଦେଓ୍ୱାନ୍ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ରାଜା ନିଜ ନାମରେ ରଣପୁର ଗଡ଼ରେ ଏକ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ଏହା 'ବ୍ରଜେନ୍ଦ୍ର' ଚନ୍ଦ୍ର ହାଇସ୍କୁଲ ରୂପେ ପରିଚିତ । ଏହା ବ୍ୟତୀତ ଗଡ଼ ବାଣୀକଲେ ଗୋପାଳପୁର ଓ ରାଜ-ସୁନାଖଳାଠାରେ ମାଇନର ସ୍କୁଲ ପ୍ରତିଷ୍ଠା ହୋଇଥିଲା । ତାଙ୍କ ରାଜତ୍ୱରେ ରାଜ-ସୁନାଖେଳାରେ ଡାକ୍ତରଖାନା, ରଣପୁର ଗଡ ଡାକ୍ତରଖାନାରେ ଅପରେସନ ଥିଏଟର, ମଙ୍ଗରାଜପୁର ଠାରେ କୁଷ୍ଠାଶ୍ରମ, ପାଇକସାହିରେ ହାଟ, ଜଗନ୍ନାଥ ମାର୍କେଟ ଓ ୱେଲିଙ୍ଗ୍‌ଡନ୍‌ସ ପାର୍କ ପ୍ରଭୃତି ନିର୍ମିତ ହୋଇଥିଲା ।

ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ ପରେ ବ୍ରଜେନ୍ଦ୍ର ଚନ୍ଦ୍ର ବିଦ୍ୟାଧ୍ୟୟନରେ ବ୍ରତୀ ଥିବାରୁ ରାଜମାତା ବସନ୍ତ ମଞ୍ଜରୀ ଦେବୀ Regent ଭାବେ ରାଜ୍ୟ ପରିଚାଳନା କଲେ । ସେ ଦେୱାନ୍ ଓ ତହସିଲଦାରଙ୍କୁ ନେଇ ବୋର୍ଡ଼ ଗଠନ କଲେ । ଏହି ବୋର୍ଡ଼ର ସଦସ୍ୟ ମାନଙ୍କ ମଧ୍ୟରେ ବିଭାଗ ବଣ୍ଟନ କରି ଯାଇ ଶାସନ ପରିଚାଳିତ ହେଉଥିଲା ।

**ଶିକ୍ଷା** ତାଙ୍କ ରାଜତ୍ୱ ଭାରତର ସ୍ୱାଧୀନତା ପ୍ରାପ୍ତିର ପୂର୍ବ ସମୟ । ତତ୍କାଳୀନ ଶିକ୍ଷା, ଶାସନ ଆଦି କେତେକ ଘଟଣା ସମ୍ବନ୍ଧରେ ସୂଚନା ଦେଇ ରାଜ ଶାସନର ଚିତ୍ର ପ୍ରଦାନ କରୁଛି । ରଣପୁର ଗଡରେ ଏକ ହାଇସ୍କୁଲ ଗଡ ବାଣୀକଲୋ, ଗୋପାଳପୁର ଓ ରାଜ-ସୁନାଖଳାରେ ନୂତନ ମି:ଇ: ସ୍କୁଲ ମାନ ୧୯୪୫-୪୬ ମସିହାରେ ସ୍ଥାପିତ ହୋଇଥିଲା । ରଣପୁର ଗଡରେ ଥିବା ମି:ଇ: ସ୍କୁଲର ଛାତ୍ରଛାତ୍ରୀ ମାନେ ମାଇନର ପାଶ କରୁଥିଲେ । ୧୯୪୫ ମସିହାରେ ଏହି ବିଦ୍ୟାଳୟରେ ୩୩ ଜଣ ସପ୍ତମ ଶ୍ରେଣୀ ପରୀକ୍ଷା (M.S.C. Examination) ଦେଇ ତନ୍ମଧ୍ୟରୁ ୨୭ଜଣ ଉତ୍ତୀର୍ଣ୍ଣ ହୋଇଥିଲେ । ଅନ୍ୟ ୩ଟି ନୂତନ ମି:ଇ: ସ୍କୁଲର କେହି ଛାତ୍ର ଉକ୍ତ ବର୍ଷ କମନ୍ ପରୀକ୍ଷା ଦେଇ ନଥିଲେ । ରଣପୁର ଗଡ ମି:ଇ: ସ୍କୁଲରେ ୫ଜଣ ଶିକ୍ଷକ ଥିଲେ ମଧ୍ୟ କେହି ଅଭିଜ୍ଞ କିମ୍ବା ତାଲିମ ପ୍ରାପ୍ତ ନଥିଲେ ।

ରଣପୁର ରାଜ୍ୟରେ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଥିବା ବିଦ୍ୟାଳୟ ସଂଖ୍ୟା ନିମ୍ନମତେ ପ୍ରଦାନ କରୁଛି । ହାଇସ୍କୁଲ-୧, ମି:ଇ: ସ୍କୁଲ-୪, ୟୁ:ପି: ସ୍କୁଲ-୪, ଲ:ପ୍ରା: ସ୍କୁଲ-୨୩, ସଂସ୍କୃତ ଟୋଲ-୧, ମକ୍ତବ-୧ ଓ ଜୈନ ବିଦ୍ୟାଳୟ-୧ । ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ମୋଟ ୧୪୯୫ ଜଣ ଛାତ୍ର ଛାତ୍ରୀ ଅଧ୍ୟୟନ କରୁଥିଲେ । ତନ୍ମଧ୍ୟରେ ମୁସଲମାନ ଛାତ୍ରସଂଖ୍ୟା ୩୪ ଥିଲା । ଏହି ଶିକ୍ଷାନୁଷ୍ଠାନମାନ ପରିଦର୍ଶନ ପାଇଁ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସୀର ଶିକ୍ଷା ଉପଦେଷ୍ଟା (Educational Advisor) ଡ଼ଃ ମାୟାଧର ମାନସିଂହ ରଣପୁର ପରିଦର୍ଶନ କରିଥିଲେ । ପରିଦର୍ଶନ ସମୟରେ ଗଡ ବାଣୀକଲୋ, ଗୋପାଳପୁର ଓ ରାଜ-ସୁନାଖଳା ମି. ଇ. ସ୍କୁଲ ଯାଇ ତାଙ୍କର ମତାମତ ପ୍ରଦାନ କରିଥିଲେ । ସେଥିରେ ତତ୍କାଳୀନ ଶିକ୍ଷା ସମ୍ବନ୍ଧରେ କେତେକ ସୂଚନା ମିଳେ ।

ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ପ୍ରଥମେ ବର୍ଣ୍ଣମାଳା ପରେ ଯୁକ୍ତାକ୍ଷର ଶିକ୍ଷା ଦିଆଯାଉଥିଲା । ମଧୁ ବାବୁଙ୍କ ବର୍ଣ୍ଣବୋଧ, ଗୋପୀଭାଷା, ମନବୋଧ ଚଉତିଶା ପ୍ରଭୃତି ସାହିତ୍ୟ ପୁସ୍ତକ ରୂପେ ପଢ଼ା ଯାଉଥିଲା । ଗଣିତ ମଧ୍ୟରେ ୨୫ ଖଦା ପର୍ଯ୍ୟନ୍ତ ପଣିକିଆ ଓ ଏଥିରେ କଡାଗଣ୍ଡା, ସାହି ପଣିକିଆ ଇତ୍ୟାଦି ଶିକ୍ଷା ଦିଆଯାଉଥିଲା । ବହି ଅଧ୍ୟୟନ କରି ବନାନ ଓ ଉଚ୍ଚାରଣ ଉପରେ ଅଧିକ ଗୁରୁତ୍ୱ ଦିଆ ଯାଉଥିଲା ।

ସେତେବେଳେ ଓଡିଶାରେ ୬ଟି ଜିଲ୍ଲା ଓ ୨୬ଟି ଗଡଜାତ ଥିଲା । ୨୬ଟି ଗଡ଼ଜାତ ମଧ୍ୟରୁ ୨୪ଟି ଓଡିଶାରେ ଓ ୨ଟି ବିହାର ପ୍ରଦେଶରେ ମିଶ୍ରଣ ହୋଇଛି । ଛାତ୍ର ଛାତ୍ରୀମାନେ ଗଡଜାତ ଗୁଡିକର ନାମ ସହଜରେ ମନେ ରଖିବା ପାଇଁ ନିମ୍ନଲିଖିତ ପଦ୍ୟାଂଶ ଆବୃତ୍ତି କରୁଥିଲେ ।

"ମନିକେ ପା ତାହି ଆଢ଼େତଆ ନବ
ବୋଦ ଖନ ରବା ସୋରେ ପାକ ସଖ ଗାବ ।"

ଉପର ବର୍ଣ୍ଣିତ ପଦ୍ୟାଂଶର ପ୍ରତ୍ୟେକ ଅକ୍ଷର ଗୋଟିଏ ଗୋଟିଏ ଗଡଜାତର ଆଦ୍ୟ ନାମ ଅଟେ । ତାହା ହେଉଛି ମୟୂରଭଞ୍ଜ, ନୀଳଗିରି, କେନ୍ଦୁଝର, ପାଲଲହଡା, ତାଳଚେର, ହିନ୍ଦୋଳ, ଆଠମଲ୍ଲିକ, ଢ଼େଙ୍କାନାଳ, ତିଗିରିଆ, ଆଠଗଡ, ନରସିଂହପୁର, ବଡ଼ମ୍ବା, ବୌଦ, ଦଶପଲ୍ଲା, ଖଣ୍ଡପଡ଼ା, ନୟାଗଡ଼, ରଣପୁର, ବାମଣ୍ଡା, ସୋନପୁର, ରେଢ଼ାଖୋଲ, ପାଟଣା, କଳାହାଣ୍ଡି, ସରେଇକଳା, ଖରସୁଆଁ ଗାଙ୍ଗପୁର, ବଣାଇ ।

**ପୋଲିସ ଥାନା** – ତତ୍କାଳୀନ ରଣପୁର ରାଜ୍ୟରେ ଗୋଟିଏ ପୋଲିସ ଥାନା ଓ ଦୁଇଟି ଫାଣ୍ଡି ଥିଲା । ପୋଲିସ ବିଭାଗରେ ଜଣେ ପୋଲିସ ସବ୍-ଇନସପେକ୍ଟର, ୪ଜଣ ସହକାରୀ ସବ୍-ଇନସପେକ୍ଟର, ୧ଜଣ ହାବିଲଦାର, ୩ଜଣ ରାଇଟର କନେଷ୍ଟବଳ, ୪ଜଣ ନାୟକ, ୧୬ଜଣ କନେଷ୍ଟବଳ ଓ ୧୬ଜଣ ସଶସ୍ତ୍ର କନେଷ୍ଟବଳ ଥିଲେ । ରଣପୁର ଗଡ ଥାନା ପୋଲିସ ସବ୍-ଇନସପେକ୍ଟର ଏବଂ ଗୁନ୍ଦପୁର ଓ ରାଜ-ସୁନାଖଳା ଫାଣ୍ଡି ସହକାରୀ ସବ୍-ଇନସପେକ୍ଟରଙ୍କ ଦାୟିତ୍ୱରେ ଥିଲା । ପୂର୍ବରୁ ମହିପାଟଣ୍ଡେ ଠାରେ ଥିବା ପୋଲିସ ଫାଣ୍ଡି ୧୯୩୭ ମସିହାରୁ ଉଠି ଯାଇଥିଲା ।

**ଜଙ୍ଗଲ ବିଭାଗ** – ରଣପୁର ରାଜ୍ୟରେ ଜଙ୍ଗଲ ସମ୍ପଦ ମୁଖ୍ୟ ଆୟ ଥିଲା । ରାଜ୍ୟର ୭୫ ବର୍ଗମାଇଲ ପରିମିତ ଅଞ୍ଚଳରେ ସଂରକ୍ଷିତ ଜଙ୍ଗଲ ଓ ୫୧ବର୍ଗ

ମାଇଲ ପରିମିତ ଅଞ୍ଚଳରେ ସେସବୁ ଜଙ୍ଗଲ ଥିଲା । ଜଙ୍ଗଲ ବିଭାଗ ତରଫରୁ ୧ଜଣ ରେଞ୍ଜର, ୧ଜଣ ଡେପୁଟୀ ରେଞ୍ଜର ୧ଜଣ ତାଲିମ ପ୍ରାପ୍ତ ଫରେଷ୍ଟର, ୨ଜଣ ଅଣତାଲିମ ପ୍ରାପ୍ତ ଫରେଷ୍ଟର, ୨ଜଣ ନାକା ମୋହରର, ୧ଜଣ କିରାଣୀ, ୧୬ଜଣ ଫରେଷ୍ଟ ଗାର୍ଡ଼ ଓ ୨ଜଣ ଅଫିସ ପିଅନ ନିଯୁକ୍ତ ପାଇ ଥିଲେ । ଉପରୋକ୍ତ କର୍ମଚାରୀ ମାନଙ୍କର ଦରମା ଓ ଅନ୍ୟାନ୍ୟ ବାବଦରେ ୧୯୪୫ ମସିହାରେ ଟ ୯,୫୩୩/- ଖର୍ଚ୍ଚ ହୋଇଥିବା ବେଳେ ଆୟ ହୋଇଥିଲା ଟ ୪୮,୩୨୮/- ଜଙ୍ଗଲ ବିଭାଗର ଉକ୍ତ ୨୬ଜଣ କର୍ମଚାରୀ ମାନଙ୍କର ବର୍ଷକର ଦରମା ଓ ଅନ୍ୟାନ୍ୟ ବାବଦ ଖର୍ଚ୍ଚ ବାବଦରେ ମାତ୍ର ଟ୯, ୫୩୩/- ହୋଇଥିବା ଜାଣି ହୁଏତ କେହି ପାଠକ ଆଶ୍ଚର୍ଯ୍ୟ ହେଉଥିବେ । କିନ୍ତୁ ସେତେବେଳେ ସେମାନଙ୍କର ଦରମା ଥିଲା କମ୍ କିନ୍ତୁ ଟଙ୍କାର ମୂଲ୍ୟ ଥିଲା ଅଧିକ । ୧୯୪୫ ମସିହାରେ ରଣପୁର ରାଜ୍ୟରେ ଦୈନିକ ମଜୁରୀ ଥିଲା ପାଞ୍ଚଅଣା । ଚାଉଳ ୧ ଟଙ୍କାକୁ ୫ $\frac{1}{2}$ ସେର, ଧାନ ୧୨ ସେର, ମୁଗ ୫ $\frac{3}{4}$ ସେର ଓ ମାଣ୍ଡିଆ ୧୦ସେର ମିଳୁଥିଲା ।

**କୃଷି ଓ ଶିଳ୍ପ ପ୍ରଦର୍ଶନୀ** – ୧୯୪୬ ମସିହା ନଭେମ୍ବର ମାସରେ ରଣପୁର ଗଡ଼ରେ ଏକ ବଡ଼ ଧରଣର କୃଷି ଓ ଶିଳ୍ପ ପ୍ରଦର୍ଶନୀ ହୋଇଥିଲା । ଏହା ଏକ ମାସ ଧରି ଚାଲିଥିଲା । ଏହି ପ୍ରଦର୍ଶନୀକୁ ପଲିଟିକାଲ ଏଜେଣ୍ଟ ମିଃ ଓର୍ଥ, ସହକାରୀ ପଲିଟିକାଲ ଏଜେଣ୍ଟ କ୍ୟାପଟେନ ଆର୍. ସି. ମର୍ଫି ଦଶପଲ୍ଲାର ରାଜା ବାହାଦୂର କିଶୋର ଚନ୍ଦ୍ର ଦେଓଭଞ୍ଜ, ନୟାଗଡ଼ ରାଜା ସାହେବ କୃଷ୍ଣଚନ୍ଦ୍ର ସିଂହ ମାନଧାତା, ଖଣ୍ଡପଡ଼ା ରାଜା ସାହେବ ହରିହର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ, କନିକା ଓ ଓଳସିଂହର ଜମିଦାର, ରାୟ ବାହାଦୁର ପ୍ରଫେସର ବିପିନ ବିହାରୀ ରାୟ, ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକ ଜିଲ୍ଲା ମାଜିଷ୍ଟ୍ରେଟ ପ୍ରମୁଖ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ପରିଦର୍ଶନ କରିଥିଲେ । ଏହି ପ୍ରଦର୍ଶନୀରେ ରଣପୁର, ଖଣ୍ଡପଡ଼ା, ନୟାଗଡ଼, ଦଶପଲ୍ଲା, ଖୋର୍ଦ୍ଧା, ପୁରୀ ଓ କଟକର ବହୁ ଶିଳ୍ପ ସଂସ୍ଥା ଯୋଗ ଦେଇଥିଲେ । ଏଥିପାଇଁ ରଣପୁର ରାଜକୋଷରୁ ଟ ୬, ୮୦୩ଙ୍କା ବ୍ୟୟ ହୋଇଥିଲା ।

**ଉତ୍କଳବୀର ଉଦ୍ଧବ ମାଲୁଆ** – ମଧୁପୁର ନିବାସୀ ଉଦ୍ଧବ ମାଲୁଆ ଜଣେ ଖ୍ୟାତନାମା ପହଲମ୍ୟାନ ରୂପେ ରଣପୁର ରାଜ୍ୟରେ ସୁବିଦିତ । ସେ 'ଉତ୍କଳ ବୀର' ଗୌରବରେ ଭୂଷିତ ହୋଇଥିଲେ । Administrative

report of Ranpur State, 1945 ରେ ତାଙ୍କ ସମ୍ବନ୍ଧରେ ନିମ୍ନମତେ ଉଲ୍ଲେଖ ଅଛି— "In the field of physical prowess Uchhab Machhua, better known as 'Utkal Bir' has earned an undying fame by his feats of physical strength such as carrying a laden bullock cart and breaking of stones on his chest and stopping motor cars, etc.

**ରାଜ୍ୟ ମିଶ୍ରଣ**—ରାଜା ବ୍ରଜେନ୍ଦ୍ର ଚନ୍ଦ୍ରଙ୍କ ରାଜତ୍ୱ ସ୍ୱଳ୍ପକାଳ ଥିଲା । ବ୍ରିଟିଶ ସରକାର ଭାରତ ଛାଡି ଯାଉଥିବା ଯୋଗୁଁ ତା ୧୧।୭।୪୭ ରିଖରେ ରାଜାଙ୍କୁ ପୂର୍ଣ୍ଣ କ୍ଷମତା ଅର୍ପଣ କରାଯାଇଥିଲା ଏବଂ ତା ୧୫-୮-୪୭ ରିଖ ଠାରୁ ରାଜାଙ୍କର ସାର୍ବଭୌମତ୍ୱ ସ୍ୱୀକାର କରାଗଲା । ଏହା ଫଳରେ ବ୍ରିଟିଶ ସରକାରଙ୍କ ସହ ରାଜାଙ୍କର ପୂର୍ବରୁ ଥିବା ସନ୍ଧି ରଦ୍ଦ ହୋଇଗଲା ।

ତା ୧୪-୧୨-୪୭ ରିଖରେ ଭାରତର ତତ୍କାଳୀନ ଉପ-ପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶା ଆସି ଗଡଜାତ ରାଜାମାନଙ୍କର ଏକ ସମ୍ମିଳନୀ କଟକଠାରେ ଅନୁଷ୍ଠିତ କରାଇଥିଲେ । ଏହି ସମ୍ମିଳନୀରେ ଡ଼ଃ ହରେକୃଷ୍ଣ ମହତାବ୍‌ଙ୍କ ମଧ୍ୟସ୍ଥତାରେ ଓଡ଼ିଶାର ୨୬ଟି ଗଡ଼ଜାତ ଓଡ଼ିଶା ପ୍ରଦେଶ ସହ ମିଶ୍ରଣ ପାଇଁ ଏକ ଚୁକ୍ତି ସମ୍ପାଦିତ ହୋଇଥିଲା । ଗଡଜାତର ରାଜାମାନେ ଏଥିରେ ସ୍ୱାକ୍ଷର କରିଥିଲେ । ରାଜମାତା ବସନ୍ତ ମଞ୍ଜରୀ ଦେବୀ ଏହି ମିଶ୍ରଣ ପ୍ରକ୍ରିୟାରେ ସାହାଯ୍ୟ କରିଥିଲେ । ମିଶ୍ରଣ ଚୁକ୍ତି ତା ୧।୧।୪୮ ରିଖ ଠାରୁ କାର୍ଯ୍ୟକାରୀ ହେବାଯୋଗୁଁ ରଣପୁର ରାଜ୍ୟ ବୃହତ୍ତର ଓଡ଼ିଶାର ଏକ ଅଂଶ ହୋଇ ରହିଲା ।

ପୂର୍ବାଞ୍ଚଳ ରାଜ୍ୟ ସମୂହର ଛବିଶଟି ଗଡଜାତ ରାଜ୍ୟ ମଧ୍ୟରେ ରଣପୁର ଆୟତନରେ ଏକବିଂଶତମ, ଜନ ସଂଖ୍ୟାରେ ବିଂଶତମ ଓ ଆୟରେ ପଞ୍ଚବିଂଶତମ ସ୍ଥାନ ଅଧିକାର କରିଥିଲା । ଏ ପ୍ରସଙ୍ଗରେ ଗଡଜାତ ମାନଙ୍କର ଏକ ତୁଳନାତ୍ମକ ବିବରଣୀ ପ୍ରଦାନ କରାଗଲା ।

## ଓଡ଼ିଶା ଫିଉଡ଼େଟୋରୀ ଷ୍ଟେଟସ୍

| ନାମ | ଆୟତନ (ବର୍ଗମାଇଲରେ) | ଜନସଂଖ୍ୟା (୧୯୩୧ମସିହା) | ବାର୍ଷିକଆୟ (୧୯୩୩ମସିହା) | ବ୍ରିଟିଶ ସରକାରଙ୍କୁ ଦେଉଥିବା କର ବା ପେସିକଶ୍ |
|---|---|---|---|---|
| ୧-ଆଠଗଡ | ୧୬୮ | ୫୦,୧୮୪ | ଟ୧,୪୮,୦୦୦ | ଟ୨,୮୦-୦-୦ |
| ୨-ଆଠମଲ୍ଲିକ | ୭୩୦ | ୬୪,୨୭୬ | ଟ୨,୧୭,୦୦୦ | ଟ୪୮୦-୦-୦ |

| | | | | |
|---|---|---|---|---|
| ୩-ବାମଣ୍ଡା | ୧,୨୮୮ | ୧,୫୧,୨୫୯ | ଟ୪,୨୪,୦୦୦ | ଟ୭,୫୦୦-୦-୦ |
| ୪-ବଡ଼ମ୍ବା | ୧୪୨ | ୪୬,୬୮୯ | ଟ ୯୭,୦୦୦ | ଟ୧,୩୯୭-୧୫ଅଣା-୫ |
| ୫-ବୌଦ | ୧,୧୬୪ | ୧,୪୫,୨୪୮ | ଟ୩,୨୧,୦୦୦ | ଟ ୮୦୦-୦-୦ |
| ୬-ବଣାଇ | ୧,୨୯୬ | ୮୦,୧୪୪ | ଟ୧,୭୬,୦୦୦ | ଟ ୫୦୦-୦-୦ |
| ୭-ଦଶପଲ୍ଲା | ୫୬୮ | ୪୨,୬୫୦ | ଟ୧,୨୦,୦୦୦ | ଟ ୬୬୧-୦-୦ |
| ୮-ଢେଙ୍କାନାଳ | ୧,୪୮୬ | ୨,୮୪,୩୨୮ | ଟ୫,୩୧,୦୦୦ | ଟ୫୦୯୯-୦-୯ |
| ୯-ଗାଙ୍ଗପୁର | ୨,୪୯୨ | ୩,୫୬,୩୮୮ | ଟ୫,୦୮,୦୦୦ | ଟ୧,୨୫୦-୩ଅଣା ୧ |
| ୧୦-ହିନ୍ଦୋଳ | ୩୧୨ | ୪୮,୮୯୭ | ଟ୧,୨୬,୦୦୦ | ଟ୫୫୧-୩ଅଣା-୧୧ |
| ୧୧ କଳାହାଣ୍ଡି | ୩,୭୪୫ | ୫,୧୩,୭୧୬ | ଟ୬;୨୫,୦୦୦ | ଟ୧୬,୦୦୦-୦-୩ |
| ୧୨-କେନ୍ଦୁଝର | ୩,୦୯୬ | ୫,୬୦,୬୪୭ | ଟ୯,୭୯,୦୦୦ | ଟ୪,୨୧୧ ୮ଅଣା ୮ |
| ୧୩-ଖରସୁଆଁ | ୧୫୩ | ୪୭,୪୫୧ | — | — |
| ୧୪-ମୟୂରଭଞ୍ଜ | ୪,୨୪୩ | ୮,୮୯,୬୦୩ | ଟ୨୯,୪୧,୦୦୦ | ଟ୧୧,୬୭-୧୧ଅଣା |
| ୧୫-ନରସିଂହପୁର | ୧୯୯ | ୪୦,୮୨୨ | ଟ୧,୧୧,୦୦୦ | ଟ୧,୪୫୫-୮ଅଣା-୩ |
| ୧୬ ନୟାଗଡ଼ | ୫୯୦ | ୧,୪୨,୩୯୯ | ଟ୩,୯୬,୦୦୦ | ଟ୫,୫୨୫-। ୧ |
| ୧୭-ନୀଳଗିରି | ୨୮୪ | ୬୮,୫୯୮ | ଟ୨,୭୩,୦୦୦ | ଟ୩,୯୦୦୦ ସାତଅଣା ୧ |
| ୧୮-ପାଲଲହଡ଼ା | ୪୫୨ | ୨୭,୯୭୫ | ଟ୭୯,୦୦୦ | ଟ୨୭୬ ଦଶଅଣା ୦ |
| ୧୯-ପାଟଣା | ୨,୫୧୧ | ୫,୬୬,୯୨୪ | ଟ୯,୦୭,୦୦୦ | ଟ୧୩,୦୦୦-୦-୦ |
| ୨୦-ରେଢ଼ାଖୋଲ | ୮୩୩ | ୩୫,୭୧୬ | ଟ୮୭,୦୦୦ | ଟ୨,୦୦୦-୦-୦ |
| ୨୧ ରଣପୁର | ୨୦୪ | ୪୭,୭୧୩ | ଟ୭୧,୦୦୦ | ଟ୧,୪୨୦-ତେରଅଣା ୨ |
| ୨୨-ସୋନପୁର | ୯୦୬ | ୨,୩୭,୯୪୫ | ଟ୪,୯୨,୦୦୦ | ଟ୧୨,୦୦୦-୦-୦ |
| ୨୩ ସରେଇକଳା | ୪୯୯ | ୧,୩୮,୬୭୧ | ଟ୩,୩୪,୦୦୦ | — |
| ୨୪ ତାଳଚେର | ୩୯୯ | ୬୯,୭୦୨ | ଟ୨,୯୪,୦୦୦ | ଟ୧,୦୩୯-ଦଶଅଣା-୫ |
| ୨୫-ତିଗିରିଆ | ୪୬ | ୨୪,୬୮୦ | ଟ୪୫,୦୦୦ | ଟ୮୮୨-୦-୦ |
| ୨୬-ଖଣ୍ଡପଡ଼ା | ୨୪୪ | ୭୭,୯୧୦ | ଟ୨,୪୮,୦୦୦ | — |

ଗଡଜାତ ମିଶ୍ରଣ ପରେ ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସିଂହଦେଓ କ୍ଷମତାଚ୍ୟୁତ ହେଲେ । ସେ ତା ୨୪।୧୨।୭୯ରେ ମାନବଲୀଳା ସମ୍ବରଣ କଲେ । ଫଳରେ ତାଙ୍କର ଜ୍ୟେଷ୍ଠପୁତ୍ର ପ୍ରତାପ ଚନ୍ଦ୍ର ସିଂହଦେଓ କ୍ଷମତା ବିହୀନ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ସେ ଅତି ଭଦ୍ର ଓ ମେଳାପୀ ଥିଲେ ।

ତା ୬।୬।୮୨ ରିଖ ଅପରାହ୍ନ ଘ୪-୩୦ ମିନିଟରେ ଏକ ମୋଟର ସାଇକେଲ ଦୁର୍ଘଟଣାରେ ସମ୍ମୁଖୀନ ହୋଇ ରାଜା ପ୍ରତାପ ଚନ୍ଦ୍ର ଭୁବନେଶ୍ୱର ଠାରେ ପରଲୋକ ଗମନ କଲେ । ତାଙ୍କର ଆକସ୍ମିକ ବିୟୋଗ ହେତୁ ରଣପୁରରେ ଶୋକର ଛାୟା ଖେଳି ଯାଇଥିଲା । ଏହା ପୂର୍ବରୁ ରାଜମାତା ଦୁର୍ଗେଶ ନନ୍ଦମା ଦେବୀ ତା ୨୧।୭।୮୧ ରେ ପରଲୋକ ଗମନ କରିଥିଲେ । ରାଜା ପ୍ରତାପଚନ୍ଦ୍ରଙ୍କ ପଛାବୃତ ସ ହେବ ଶ୍ରୀ ଦିଲ୍ଲୀପ ଚନ୍ଦ୍ର ସିଂହଦେଓ ସିଂହାସନ ଆରୋହଣ କଲେ ।

## ଛାମୁ ଚିଠାଉ

ଗଜପତି ମହାରାଜାଙ୍କ ଶ୍ରୀ ଛାମୁରୁ ରଣପୁରର ରାଜାମାନଙ୍କ ନିକଟକୁ ଚିଠି ବା ଚିଠାଉ ଆସୁଥିଲା । ପାଠକଙ୍କ ଅବଗତି ନିମନ୍ତେ ମିଳିଥିବା ଗୁଡ଼ିଏ ଚିଠିର ନକଲ ପ୍ରଦାନ କଲି ।

## ବନମାଳୀ ନରେନ୍ଦ୍ରଙ୍କୁ ଚିଠି

“ଅ୧୦ଙ୍କେ ଦି୩ନର ଶ୍ରୀ ହସ୍ତେ ଲେଖା ଅଛନ୍ତି ଏ ପ୍ରମାଣ । ଏଥିକୁ ଦିଆନଙ୍କ ଚିଠାଉ ଅଛୁ । ଏ ଦିନ ବେହେରଣେ ତଳପ ଶ୍ରୀଛାମୁ ଚିଠାଉ ଆଜ୍ଞା ଛାମୁଣେ ଛୁଆ ଖଣ୍ଡି ସେବା ଖଟିଲି । ରଣପୁର ବନମାଳି ନରେନ୍ଦ୍ରଙ୍କୁ ପରମ୍ପରା ଛାମାଣେ ପାଢ଼ୀ ଗନ୍ତାରୁ ଖସା ଫେଟା ଗୋ୧ ସୁଧରୁ ହା ୧୦ ।”

## ସାରଙ୍ଗଧର ବଜ୍ରଧର ନରେନ୍ଦ୍ରଙ୍କୁ ଗଜପତି ବୀରକେଶରୀ ଦେବ (୧ମ)ଙ୍କ ଚିଠି

“ଏ ମହାରାଜାଙ୍କ ଏ ଅଙ୍କ କକଡ଼ା ୨୩ଦିନେ ଛାମୁ ଚିଠାଉ ଟେଠ । ରଣପୁର ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କର ନିତ୍ୟାନ ମଠ ଅଛନ୍ତି । ୨୦ଗୋଟା ତିଉଣି ଏ ବ.ହାରେ ପ୍ରତି ଏକ ବଣିରେ ଦଣ୍ଡେଙ୍କା ଲେଖାଏଁ ମଣୋହି ହେଉଥିବ । ଏଥି ହ.ସିଲ ଟେରକଡ ଓପର ଚଳପ ନକରିବ ଅ୧୦ଙ୍କ କକଡ଼ା ଦି୨ନର ।”

× × × ×

“ଏ ମହାରାଜାଙ୍କ ଅ୧୫ଙ୍କ ମେଷ ଦି୧୨ନେ ଶ୍ରୀ ହଂସବଲ୍ଲଭ ହୁକୁମ ଭାଷା ଅଛନ୍ତି ନନ୍ଦଘୋଷ ରଥ ଘଟଣ ନିମନ୍ତେ କସ ସିମୁଳ ଆସିବେ । ଏ ନିମନ୍ତେ ରଣପୁର ନକ୍ଷତ୍ରଙ୍କୁ ଦେଉଛୁ ଏ ସାଢ଼ୀ ମହାପ୍ରସାଦ ଛାମୁଖଣ୍ଡିଆ ଜମାଇ ଅନ୍ତବୁଧି ମାରଫତେ ଦେବ ।”

× × × ×

"ଏ ମହାରାଜାଙ୍କ ୫୭ଙ୍କେ ମେଷ ୨୨ଦିନେ ହଂସବଲ୍ଲଭ ହୁକୁମର ଭାଷା ରଣପୁର ନରେନ୍ଦ୍ରଙ୍କୁ ପରମ୍ପରା ପ୍ରମାଣେ କସ ସିମୁଳ ନିମନ୍ତେ ଦେଉଛୁ ଶାଢ଼ୀ ମହାପ୍ରସାଦ ଦେବ ।"

ଉପରୋକ୍ତ ମାଦଳାପାଞ୍ଜି ବର୍ଣ୍ଣିତ ଚଟି ବ୍ୟତୀତ 'ଶ୍ରୀଜଗନ୍ନାଥ-ସ୍ଥଳ-ବୃତ୍ତାନ୍ତମ୍' ପାଣ୍ଡୁଲିପିରୁ ଏ ସମ୍ବନ୍ଧୀୟ କେତେକ ତଥ୍ୟ ମିଳୁଛି । 'ମାଦଳା-ପାଞ୍ଜି'ରୁ ଜଣାଯାଏ ଯେ, ମହାରାଜା ଅନଙ୍ଗଭୀମଙ୍କ ରାଜତ୍ୱ କାଳରେ ଶ୍ରୀ ମନ୍ଦିରରେ 'ଛତିଶା ନିଯୋଗ' ପ୍ରଚଳିତ ଥିଲା । ଜଣେ ସମ୍ରାଟଙ୍କ ସେବା ନିମନ୍ତେ ରାଜ ପ୍ରାସାଦରେ ଯେଉଁପରି ବ୍ୟବସ୍ଥା ପୂର୍ବେ ଖଞ୍ଜା ହୋଇଥିଲା ଠିକ୍ ସେପରି ଓ ତା ଠାରୁ କିଛି ଅଧିକ ବ୍ୟବସ୍ଥା ମଧ୍ୟ ଶ୍ରୀମନ୍ଦିରରେ ପ୍ରଚଳିତ ଥିଲା । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସି ସମ୍ରାଟଙ୍କୁ ତାଙ୍କ କରଦ ସାମନ୍ତ ରାଜାମାନେ ଯେପରି ଭେଟି ଉପହାର ଦେଇ ପୁରସ୍କୃତ ହେଉଥିଲେ, ସେପରି ଘଟଣା "ଜଗନ୍ନାଥ-ସ୍ଥଳ-ବୃତ୍ତାନ୍ତମ୍" ନାମକ ଏକ ପୁରୁଣା ତେଲୁଗୁ ପାଣ୍ଡୁଲିପିରେ ବର୍ଣ୍ଣିତ ହୋଇଅଛି । ମାନ୍ଦ୍ରାଜର ଓରିଏଣ୍ଟାଲ ମାନୁସ୍କ୍ରିପ୍ଟ ଲାଇବ୍ରେରୀ (Oriental Manuscript Library) ରେ ଆଜକୁ ପ୍ରାୟ ୨୦୦ ବର୍ଷ ପୂର୍ବରୁ ସୁରକ୍ଷିତ ସେହି ପାଣ୍ଡୁଲିପିଟିରେ ଶ୍ରୀ ଜଗନ୍ନାଥଙ୍କୁ ଓଡ଼ିଶାର କେତେକ ସାମନ୍ତ ରାଜା "ଭେଟି" ସମର୍ପଣ କରି ଦର୍ଶନ କରିବା ଓ ସେମାନଙ୍କୁ ଶ୍ରୀମନ୍ଦିର ଭଣ୍ଡାରରୁ "ଶାଢ଼ି ଶିରୋପା" ଦିଆଯିବା ଘଟଣା ବିସ୍ତୃତ ଭାବେ ଉଲ୍ଲେଖ ହୋଇଅଛି । ଐତିହାସିକ ଡଃ ସତ୍ୟନାରାୟଣ ରାଜଗୁରୁ ଏହି ତେଲୁଗୁ ପାଣ୍ଡୁଲିପି ପାଠକରି ଓଡ଼ିଆରେ ଅନୁବାଦ କରିଛନ୍ତି । ଏଥିରେ ରଣପୁର ରାଜାଙ୍କ ସହ ଜଡ଼ିତ ଥିବା ଘଟଣାବଳୀକୁ ନିମ୍ନରେ ଉଲ୍ଲେଖ କଲି ।

"ଦିବ୍ୟସିଂହ ଦେବଙ୍କ ୧୧ ଅଙ୍କ କନ୍ୟା, ୧୩ଦିନ ଦେଉଳ ପରିଛାଙ୍କୁ ରାଜାଙ୍କ ପକ୍ଷରୁ "ପାଟସାହାଣୀ" ଗୋଟିଏ ପତ୍ର ଲେଖି ଜଣାଇଥିଲେ, "ରଣପୁର ରାଜା ବନମାଳୀ ନରେନ୍ଦ୍ର ଠାକୁରଙ୍କ ଦର୍ଶନ ସକାଶେ ଆସି ଅଛନ୍ତି । ତେଣୁ ପୂର୍ବ ପ୍ରଚଳିତ ପ୍ରଥାନୁସାରେ ତାଙ୍କୁ ସମ୍ମାନିତ କରିବାକୁ ହେବ । ସେ ଠାକୁରଙ୍କ 'ବେଣ୍ଟ' (ଶିକାର) ଯାହାବେଳେ ଏକ ଛୁରୀ (କଟାରୀ) ଓ ଗୋଟିଏ ଖଣ୍ଡା (କୃପାଣ) ଧରି ଠାକୁରଙ୍କ ଆଗରେ ଚାଲିବା ସେବା ଅଧିକାର ତାଙ୍କୁ ପୂର୍ବରୁ ଦିଆଯାଇଛି । ସେହି ଦୁଇଟି ଅସ୍ତ୍ର ଶ୍ରୀମନ୍ଦିର ଭଣ୍ଡାରରୁ ବାହାର କରି ତାଙ୍କୁ ଦେବାକୁ ହେବ । ସେହି କୃପାଣର ନାମ ହେଉଛି 'ପାଟଖଣ୍ଡା' ।

× × × ×

ମହାରାଜା ଶ୍ରୀ ରାମଚନ୍ଦ୍ର ଦେବଙ୍କ ୧୦ଅଙ୍କ କର୍କଟ, ୨୩ଦିନ ଦେଉଳ କରଣ ଓ ପରୀକ୍ଷାଙ୍କ ଠାରୁ ରାଜା ଗୋଟିଏ ପତ୍ର ଲେଖି ଜଣାଇଥିଲେ ଯେ, ରଣପୁର ରାଜା ବନମାଳୀ ନରେନ୍ଦ୍ର ଦେବ ଠାକୁରଙ୍କ ବିଜୟ ଉତ୍ସବ ବେଳେ ଛତ୍ର ଓ ଖଣ୍ଡାଧର ଅଗ୍ରଗାମୀ ସୈନିକ ବେଶରେ ଚାଲିବା ନିୟମ ପୂର୍ବରୁ ରଣପୁର ରାଜବଂଶରେ ପ୍ରଚଳିତ ଥିଲା । ଏଣୁ ବର୍ତ୍ତମାନର ରାଜା ମଧ୍ୟ ସେହିପରି ଅଧିକାର ପାଇବାକୁ ଯୋଗ୍ୟ । ଏଥିପାଇଁ ତାଙ୍କୁ ନିମ୍ନୋକ୍ତ ଉପହାର ଅମ୍ଭ ପକ୍ଷରୁ ଦିଆଯିବ : (୧) ମୁଣ୍ଡରେ ବାନ୍ଧିବାର ଶ୍ୱେତ ଖଣ୍ଡୁବା (୨) ବସନ୍ତ ଟୋପିଆ ନାମକ ବସ୍ତ୍ର (୩) ରାଜସିଂହ-ନୋଳିଆ ନାମକ ଦୁଇଟି ବସ୍ତ୍ର । ଯେଉଁ ୧୨ଜଣ 'ପାଇକ' ତାଙ୍କ ସାଥିରେ ଆସିଛନ୍ତି ସେମାନଙ୍କ ପାଇଁ ପ୍ରତ୍ୟେକରେ ୦୫ଟି ଲେଖାରେ ୧୨ଟି ବସ୍ତ୍ରଥିବା ପୋଷାକ ଦିଆଯିବ । ସେଗୁଡିକ ଠାକୁରଙ୍କ ଲାଗି ବସ୍ତ୍ର । ସେମାନଙ୍କ ସକାଶେ ୨୦ଟି କୁଡୁଆରେ ଅନ୍ନ-ପ୍ରସାଦ ମଧ୍ୟ ବିନାମୂଲ୍ୟରେ ଭୋଗ ହୋଇ ତାଙ୍କୁ ଦିଆଯିବ ।

× × × ×

ଶ୍ରୀ ବୀରକେଶରୀ ଦେବଙ୍କ ୧୮ଅଙ୍କ ତୁଳ, ୩୦ଦିନ ରାଜାଙ୍କଠାରୁ ନିମ୍ନଲିଖିତ ପତ୍ରଟି 'ପରୀକ୍ଷା' ପାଇଥିଲେ : "ରଣପୁର" ରାଜା ଧୀର ନରେନ୍ଦ୍ର (ସାରଙ୍ଗଧର ନରେନ୍ଦ୍ର ?) ଦେବ ଦର୍ଶନ ପାଇଁ ସପରିବାରେ ଶ୍ରୀକ୍ଷେତ୍ରକୁ ଆସିଛନ୍ତି । ସେମାନେ "ଅଟକା ପହଣ୍ଡ" ଠାରୁ ଯେଉଁ ବାଟରେ ମନ୍ଦିର ଭିତରକୁ ଭୋଗ ଭୂଆଁ ହୁଏ, ସେହି ବାଟଦେଇ ଯିବେ, ପୁଣି ଯେଉଁ ବାଟରେ ବିମଳା ଓ ଲକ୍ଷ୍ମୀଙ୍କ ମନ୍ଦିରକୁ ରାସ୍ତା ପଡିଛି, ତାହା ସେହି ରାଜ ମହିଳାମାନଙ୍କ ଦର୍ଶନ ବେଳେ ଜନଶୂନ୍ୟ କରିବାକୁ ହେବ । "ଦେଉଳକରଣ"ଙ୍କ ଠାରୁ ଆମ୍ଭେ ଶୁଣୁଛୁ ଏଥି ପୂର୍ବେ ଏହି ରାଜାମାନେ ଠାକୁରଙ୍କ ଦର୍ଶନ ବେଳେ ୧୦ଟି ସୁନା ମୋହର ୫୦ଟି ରୂପା ମୋହର ଓ ଠାକୁରଙ୍କ ଲାଗି ସକାଶେ ନୈବେଦ୍ୟ ଭେଟି ଦେଇଥିଲେ । ତେଣୁ ଯେପରି ପୂର୍ବ ସମ୍ମାନ ତାଙ୍କୁ ଦିଆଯିବ । ରାଜାଙ୍କ ଗହଣରେ ସନାତନ ପାଇକରାୟ ଆସିଛନ୍ତି, ତାଙ୍କୁ ମଧ୍ୟ ଦର୍ଶନ କରିବାକୁ ସୁବିଧା ଦିଆଯିବ । ସେମାନେ ଆମ୍ଭ ପକ୍ଷରୁ ଶାଢ଼ି ଓ ମହାପ୍ରସାଦ ପାଇବେ । ରାଜାଙ୍କ ସଙ୍ଗେ ତାଙ୍କ ପରିବାରର ଯେଉଁ ତିନିଜଣ "ଭାଇପୁଅ" (ପୁତୁରା) ଆସିଛନ୍ତି, ତାଙ୍କୁ ତିନୋଟି ଶାଢ଼ି (ବସ୍ତ୍ର) ଦିଆଯିବ । ଦକ୍ଷିଣ ଦ୍ୱାର ବାଟେ ରାଜ ପରିବାରର ସମସ୍ତେ ଦର୍ଶନ ପାଇଁ 'ଜଗମୋହନ' ଦେଇ ଗଲାବେଳେ

ଦେଉଳରେ କେହି ଇତରଲୋକ ରହିବେ ନାହିଁ ଏବଂ ଉତ୍ସବ ଦଗରେ ପରଦା ଆବୃତ୍ତ କରିବାକୁ ହେବ । ଭାଇ ପୁଅମାନେ ପ୍ରତ୍ୟେକେ ଦୁଇଟି ସ୍ୱର୍ଣ୍ଣମୋହର ଭେଟି ଦେଇଥିଲେ । ସେହି ରାଜକୀୟ ଦଳରେ ସମୁଦାୟ ୩୯ଜଣ ନାରୀ ଓ ପୁରୁଷ ରହି ପ୍ରତ୍ୟେକେ ଉପଯୁକ୍ତ ସମ୍ମାନ ପାଇଥିଲେ । ରାଜା ବିମଳା ମନ୍ଦିରରୁ ଯେଉଁ ଉପହାର ପାଇଥିଲେ ତାହା ହେଉଛି—"ଟୌକାବନ୍ଦୀ ଖଣ୍ଡୁଆ" '୨ଟି, ହଂସାବଳ—ପାଟୁଡ଼ା ୧ଟି, ଚୌତାବଳ ପାଟୁଡ଼ା ୬ଟି, ସୂତା କଥା ୮ଟି, ବସନ୍ତ ସୂତାଧୋତି – ୧ହଳ, ଏହାପରେ ଯେଉଁସବୁ ଉପଢୌକନ ମହାପ୍ରଭୁଙ୍କ ଭଣ୍ଡାରରୁ ରାଜାଙ୍କୁ ଦିଆଗଲା ସେ ହେଉଛି- 'କୋକାତଣି ଧୋତି- ୧ହଳ, ଜଗାର ସିଙ୍ଗ-ଧୋତି- ୧ହଳ, ମହାଲକ୍ଷ୍ମୀଙ୍କ ମନ୍ଦିରରୁ ରାଜାଙ୍କୁ ଯେଉଁ ଉପହାର ମିଳିଥିଲା, ସେ ହେଉଛି- ଚୌର୍ଯ୍ୟକାବନ୍ଧ ଶାଢ଼ି-୨ଟି, କଳାଦର୍ମି-ଶାଢ଼ି- ୨ଟି, ରଙ୍ଗଟେନେ-ଶାଢ଼ି-୨ଟି, ସରସ୍ୱତୀଙ୍କ ମନ୍ଦିରରୁ ସେ ପାଇଥିଲେ- ୨ଟି ପାଟ ଧୋତି-୧୬ ହାତିଆ ପତାକା ୧ଟି, ଧଳା ଚାଟୁଡ଼ି-୧୨ଟି, ଶ୍ରୀକପଡ଼ା ୧ଟି ଓ ବସନ୍ତ ପଟ ପାଟୁଡ଼ା- ୧ଟି ।

ଗଜପତିଙ୍କ ରାଜତ୍ୱ କିମ୍ବା ଗଡ଼ଜାତ ରାଜାମାନଙ୍କ ଶାସନର ଅବସାନ ପରେ ସ୍ଥମ୍ଭ ଚଟାଉର ଗୁରୁତ୍ୱ ଆଉ ଉପଲବ୍ଧ ହେଉନଥିଲେ ହେଁ ଏହା ଜଗନ୍ନାଥ ସଂସ୍କୃତିର ଗୌରବୋଜ୍ଜ୍ୱଳ ଇତିହାସ । ଏହାର ଅନୁଶୀଳନରେ ଉତ୍କଳୀୟ ବା ଜଗନ୍ନାଥ ସଂସ୍କୃତିର ପୁନରୁଦ୍ଧାର ଓ ପୁନର୍ମୂଲ୍ୟାୟନ ଅପରିହାର୍ଯ୍ୟ ବିଷୟରୂପେ ଗୃହୀତ ହେଉଛି ।



# ଷଷ୍ଠ ଅଧ୍ୟାୟ

# ସ୍ୱାଧୀନତା ପରେ

୧୯୪୭ ମସିହା ଅଗଷ୍ଟ ପନ୍ଦର । ଦେଶ ସ୍ୱାଧୀନ ହେଲା । ଏହି ଅବସରରେ ଏକ ପୁରାତନ ଯୁଗର ପରିସମାପ୍ତି ଘଟିବା ସଙ୍ଗେ ସଙ୍ଗେ ଏକ ନୂତନ ଯୁଗର ଅଭ୍ୟୁଦୟ ହେଲା । ବ୍ରିଟିଶ ଶାସିତ ଭାରତୀୟମାନେ ସ୍ୱାଧୀନତାର ଆନନ୍ଦ ଉପଭୋଗ କରୁଥିବାବେଳେ ଗଡଜାତବାସୀ କିପରି ରାଜାଙ୍କ କବଳରୁ ମୁକ୍ତି ପାଇବେ ତାହାହିଁ ଚିନ୍ତା କରୁଥିଲେ । ଦେଶ ସ୍ୱାଧୀନତା ପାଇଥିବାରୁ ବେଙ୍କଲଗେଟ୍ ହତ୍ୟା ମୋକଦ୍ଦମାର ବନ୍ଦୀମାନେ ତା ୧୯।୯।୪୭ ରିଖ ଦିନ ମୁକ୍ତିଲାଭ କଲେ ।

ଦେଶ ସ୍ୱାଧୀନ ହୋଇଥିଲେ ମଧ୍ୟ ଗଡଜାତ ମାନଙ୍କର ରାଜନୈତିକ ବାତାବରଣ ସରଗରମ ଅବସ୍ଥାରେ ଥାଏ । ଫଳରେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ୧୯୪୬ ମସିହା ଡିସେମ୍ବର ମାସ ୩୦ ତାରିଖରେ କଟକ ଆସି ଓଡିଶାର ସମସ୍ତ ଗଡ଼ଜାତ ରାଜାମାନଙ୍କୁ ଚେତାବନୀ ଦେଲେ । ଓଡିଶା ସହ ଗଡ଼ଜାତ ମାନଙ୍କୁ ମିଶାଇ ଦେବା ସଙ୍ଗେ ସ୍ୱରାଷ୍ଟ୍ର ବିଭାଗକୁ କ୍ଷମତା ହସ୍ତାନ୍ତର କରିବା ପାଇଁ ପରାମର୍ଶ ଦେଇଥିଲେ ।

ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପରାମର୍ଶ କ୍ରମେ ଓଡିଶାର ସମସ୍ତ ଗଡ଼ଜାତର ରାଜାମାନେ ଉକ୍ତ ପ୍ରସ୍ତାବରେ ରାଜି ହେବା ସଙ୍ଗେ ସଙ୍ଗେ ସ୍ୱରାଷ୍ଟ୍ର ବିଭାଗକୁ କ୍ଷମତା ହସ୍ତାନ୍ତର କରିବା ପାଇଁ ସ୍ୱାକ୍ଷର କରିଥିଲେ । ଫଳରେ ୧୯୪୮ ମସିହା ଜାନୁୟାରୀ ପହିଲା ତାରିଖରେ ଓଡିଶା ଗଡ଼ଜାତର ରାଜାମାନେ ଭାରତ ସରକାରଙ୍କୁ ସେମାନଙ୍କର କ୍ଷମତା ହସ୍ତାନ୍ତର କରିଦେଲେ । କେବଳ ମୟୂରଭଞ୍ଜ ଏହାର ଏକ ବର୍ଷ ପରେ ଅର୍ଥାତ୍ ୧୯୪୯ ମସିହା ଜାନୁୟାରୀ ପହିଲାରେ ଓଡ଼ିଶା ସହ ସାମିଲ ହେଲା । ଏହି ଗଡଜାତଗୁଡିକର ଓଡିଶା ସହିତ ମିଶ୍ରଣ ଉଦ୍ୟମରେ ପଟେଲଙ୍କ ସହ ଓଡିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ପୂର୍ଣ୍ଣ ସହଯୋଗ କରିଥିଲେ । ରଣପୁର ରାଜମାତା ବସନ୍ତ ମଞ୍ଜରୀ ଦେବୀ ଏହି ମିଶ୍ରଣ ପ୍ରକ୍ରିୟାରେ ସାହାଯ୍ୟ କରିଥିଲେ । ମିଶ୍ରଣ ଚୁକ୍ତି ସ୍ୱାକ୍ଷରିତ ହେବା ପରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ରଣପୁର ରାଜା ବ୍ରଜେନ୍ଦ୍ର ଚନ୍ଦ୍ର କମ୍ ବୟସ୍କ ହୋଇଥିବାରୁ ତାଙ୍କୁ ଆଗ୍ରହରେ

ନିଜ ସାଥିରେ ଭୁବନେଶ୍ୱରରୁ ଉଡ଼ାଜାହାଜ ଯୋଗେ ମଧ୍ୟ ପ୍ରଦେଶର ରାୟପୁର ପର୍ଯ୍ୟନ୍ତ ନେଇଥିଲେ । ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସେତେବେଳେ ରାୟପୁର କଲେଜର ଛାତ୍ର ଥିଲେ ।

ଗଡଜାତ ମିଶ୍ରଣ ପରେ ରାଜାଙ୍କର ରାଜକୀୟ ମାନ ଲୋପ ପାଇଛି । ରଣପୁର ରାଜାଙ୍କର ପଦ ନରେନ୍ଦ୍ର ହୋଇଥିବାରୁ ରାଜାଙ୍କ ଆଗେ ଆଗେ ଯାଉଥିବା ଭାଟର ଡ଼ାକ- 'ସ୍ୱର୍ଗରେ ଇନ୍ଦ୍ର, ମର୍ତ୍ତ୍ୟରେ ନରେନ୍ଦ୍ର, ଶ୍ରୀ ଶ୍ରୀ ମହାରାଜା ବିଜେ କରୁଛନ୍ତି" ଇତ୍ୟାଦି ଆଉ ଶୁଣାଯାଉ ନାହିଁ ।

୧୯୪୮ ମସିହାରେ ରଣପୁର ପ୍ରଜାମଣ୍ଡଳର ସମ୍ପାଦକ ୬ ମୁରଲୀଧର ଦାସ ଓଡ଼ିଶା ଷ୍ଟେଟସ୍ କାଉନସିଲର ସଭ୍ୟରୂପେ ମନୋନୀତ ହୋଇ କାର୍ଯ୍ୟ କରିଥିଲେ । ସେତେବେଳେ ରଣପୁର ପ୍ରଜାମଣ୍ଡଳ ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲା । ୬ ମୁରଲୀଧର ଦାସ ଓ ଶ୍ରୀ ଅଗାଧି ବରାଡଙ୍କ ନେତୃତ୍ୱରେ ଗୋଟିଏ ଗୋଷ୍ଠୀ କଂଗ୍ରେସ ଆଦର୍ଶରେ ଅନୁପ୍ରାଣିତ ହୋଇଥିବା ବେଳେ ଅନ୍ୟ ଗୋଷ୍ଠୀ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଶ୍ରୀ ଗଙ୍ଗାଧର ମିଶ୍ର, ଶ୍ରୀ ରାମଚନ୍ଦ୍ର ରାମ୍ ଓ ଶ୍ରୀ ରମେଶ ଚନ୍ଦ୍ର ପଣ୍ଡା ପ୍ରମୁଖ କମ୍ୟୁନିଷ୍ଟ ଗୋଷ୍ଠୀର ନେତୃତ୍ୱ ନେଇଥିଲେ ।

ରଣପୁର ବିଶାଳ ଓଡିଶାରେ ସାମିଲ ହେବା ପରେ ଶ୍ରୀ ଶିଶିର କୁମାର ଦାସ ଡେପୁଟୀ କଲେକ୍ଟର ରୂପେ ଯୋଗ ଦେଇଥିଲେ । ସେ ରଣପୁର ରାଜ ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା କର୍ମଚାରୀମାନଙ୍କୁ ଓଡିଶା ସରକାରଙ୍କ ଅଧୀନରେ କାର୍ଯ୍ୟ କରିବାକୁ ଶପଥ ଗ୍ରହଣ କରାଇଥିଲେ । ତାଙ୍କ ପରେ ଶ୍ରୀ ଗୋପୀନାଥ ସିଂହ ଡେପୁଟୀ କଲେକ୍ଟର ଓ ସହକାରୀ ବନ୍ଦୋବସ୍ତ ଅଧିକାରୀ ରୂପେ ଯୋଗଦେଇ ରଣପୁରରେ ଜମିବାଡ଼ ବନ୍ଦୋବସ୍ତ କାର୍ଯ୍ୟ କରାଇଥିଲେ । ୧୯୫୨ ମସିହାରେ ଏହି ବନ୍ଦୋବସ୍ତ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ।

୧୯୫୨ ମସିହାରେ ଓଡିଶା ବିଧାନସଭା ପାଇଁ ପ୍ରଥମ ସାଧାରଣ ନିର୍ବାଚନ ହେବାପାଇଁ ସ୍ଥିର ହେଲା । ପୂର୍ବତନ ରଣପୁର ପ୍ରଜାମଣ୍ଡଳର କର୍ମୀ-ମାନେ ଏଥିପାଇଁ ତତ୍ପରହୋଇ ଉଠିଲେ । ରଣପୁର ପ୍ରଜାମଣ୍ଡଳର କର୍ମୀମାନେ କଂଗ୍ରେସ ଓ କମ୍ୟୁନିଷ୍ଟ-ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । କମ୍ୟୁନିଷ୍ଟ ଦଳ ପକ୍ଷରୁ ପୁରୀଜିଲ୍ଲା କମ୍ୟୁନିଷ୍ଟ ଦଳର ସଭାପତି ଶାରଙ୍ଗଧରପୁର ନିବାସୀ

ଶ୍ରୀ ଗଙ୍ଗାଧର ମିଶ୍ର ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ସ୍ଥିର ହେଲା । କଂଗ୍ରେସ ଦଳ ତରଫରୁ ରାଜନଗରର ନିବାସୀ ଶ୍ରୀ ଅଗାଧୁ ବରାଡଙ୍କ ନାମ ପ୍ରସ୍ତାବ ହେଲା । ଇତ୍ୟବସରରେ ରାଜନୈତିକ ଚକ୍ର ଘୁରିଗଲା । ରାଜମାତା ବସନ୍ତ ମଞ୍ଜରୀ ଦେବୀ ତାଙ୍କର ସମର୍ଥକ ଶ୍ରୀ ବ୍ରଜକିଶୋର ସିଂହ ସାମନ୍ତ, ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର ଓ ମୌଲବୀ ଇବ୍ରାହିମ୍ ଖାଁ ପ୍ରମୁଖ ବହୁ ବ୍ୟକ୍ତିଙ୍କୁ ନେଇ କଂଗ୍ରେସ ଦଳରେ ଯୋଗଦେଲେ ।

ରାଜମାତା ବସନ୍ତ ମଞ୍ଜରୀ ଜଣେ ବୁଦ୍ଧିମତୀ ମହିଳା । ସେ କ୍ଷମତା ଲୁବ୍ଧ ଥିଲେ । ଏଣୁ ନିର୍ବାଚନ ପାଇଁ ନାମ ତାଲିକା ଦାଖଲର ତିନି ଦିନ ପୂର୍ବରୁ କୌଶଳ କରି କଂଗ୍ରେସ୍ ଦଳପାଇଁ ପ୍ରାର୍ଥୀ ସ୍ଥିର ହୋଇଥିବା ଶ୍ରୀ ଅଗାଧୁ ବରାଡଙ୍କୁ ପ୍ରବର୍ତ୍ତାଇଲେ । ଫଳରେ ଶ୍ରୀ ବରାଡ଼ ପ୍ରାର୍ଥୀ ହେବାପାଇଁ ରାଜି ହେଲେ ନାହିଁ । ଏହି ସୁଯୋଗରେ ରାଜମାତା କଂଗ୍ରେସ ଦଳର ପ୍ରାର୍ଥୀ ହେଲେ । କଂଗ୍ରେସ ଓ କମ୍ୟୁନିଷ୍ଟ୍ ଦଳ ମଧ୍ୟରେ ନିର୍ବାଚନ ଲଢ଼ାଇ । ରାଜମାତା ବସନ୍ତ ମଞ୍ଜରୀ ବିଜୟିନୀ ହେଲେ । ସେ ଓଡ଼ିଶା ମନ୍ତ୍ରିମଣ୍ଡଳରେ ଉପମନ୍ତ୍ରୀ ପଦ ପାଇଁ ସ୍ୱାସ୍ଥ୍ୟ ବିଭାଗ ଦାୟିତ୍ୱରେ ରହିଲେ । ଓଡ଼ିଶା ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇବାରେ ସେ ହେଉଛନ୍ତି ପ୍ରଥମ ମହିଳା । ତାଙ୍କ ପରେ ନାରୀ ହିସାବରେ ଶ୍ରୀମତୀ ସରଳା ଦେବୀ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ ।

୧୯୫୭ ମସିହାରେ ୨ୟ ସାଧାରଣ ନିର୍ବାଚନ ହେଲା । ରାଜମାତା ବସନ୍ତ ମଞ୍ଜରୀ ଏଥିରେ ପୁନଃ ନିର୍ବାଚିତ ହୋଇ କ୍ୟାବିନେଟ୍ ସ୍ତରୀୟ ସ୍ୱାସ୍ଥ୍ୟ ମନ୍ତ୍ରୀରୂପେ ଦାୟିତ୍ୱ ବହନ କରିଥିଲେ ।

ତାଙ୍କ ଉଦ୍ୟମରେ ରଣପୁର ରାଜ୍ୟର ବୃନ୍ଦପୁରଠାରେ ଏକ ଦଷ୍ଟା ଡାକ୍ତରଖାନା ପ୍ରତିଷ୍ଠା ହୋଇଥିଲା । ଏହା ବୃନ୍ଦପୁର ରାଜପ୍ରାସାଦରେ କାର୍ଯ୍ୟ କରୁଅଛି । ଏହି ଡାକ୍ତରଖାନା "ବସନ୍ତ ମଞ୍ଜରୀ ସ୍ୱାସ୍ଥ୍ୟନିବାସ" ନାମରେ ନାମିତ ହୋଇଛି । ତା ୨୭।୨।୫୮ ମସିହାରେ ଏହା ଉଦ୍‌ଘାଟିତ ହୋଇଥିଲା ।

ରାଜମାତା ବସନ୍ତ ମଞ୍ଜରୀଙ୍କ ସମୟରେ ରଣପୁର ଗଡ଼, ଗୋପାଳପୁର, ଗଡ଼ ବାଣିକିଲୋ ଓ ବାଉଁଶଗଡ଼ ଠାରେ ଶିଶୁ ଓ ମାତୃମଙ୍ଗଳ କେନ୍ଦ୍ର ସ୍ଥାପିତ ହୋଇଥିଲା । ଏହା ବ୍ୟତୀତ ରଣପୁର ଗଡଠାରେ ଏକ ବାଳିକା ମାଇନର ସ୍କୁଲ ଏବଂ ବାଉଁଶଗଡ କ୍ଷୁଦ୍ର ଜଳସେଚନ ଯୋଜନା ଓ ପଥରବନ୍ଧ ଜଳସେଚନ ଯୋଜନା ତାଙ୍କ ସମୟରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ଅଟେ ।

ତା ୨୭।୪।୬୧ ରେ ସର୍ବ ସାଧାରଣଙ୍କ ଅର୍ଥ ଓ ଉଦ୍ୟମରେ ରଣପୁର ଗଡ଼ ଶ୍ରୀ ଜଗନ୍ନାଥ ମନ୍ଦିର ସମ୍ମୁଖରେ ଅରୁଣ ସ୍ତମ୍ଭ ନିର୍ମିତ ହୋଇ ତା ଉପରେ ଅରୁଣ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲା ।

ତା ୭।୬।୧୯୬୧ ରେ ଓଡ଼ିଶାର ବିଧାନସଭା ପାଇଁ ତୃତୀୟ ସାଧାରଣ ନିର୍ବାଚନ ହେଲା । ଏଥିରେ କମ୍ୟୁନିଷ୍ଟ ଦଳ ପକ୍ଷରୁ କନ୍ଦନପୁରଗଡ଼ ନିବାସୀ ଓଡ଼ିଶା ହାଇକୋର୍ଟର ଆଡ଼ଭୋକେଟ ଶ୍ରୀ ରାମଚନ୍ଦ୍ର ରାମ ଓ କଂଗ୍ରେସ ଦଳ ପକ୍ଷରୁ ଜଗପଡ଼ାର ପୂର୍ବତନ ଜମିଦାର ଶ୍ରୀ ରଘୁନାଥ ରାୟ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଉକ୍ତଦିନ ରାଜମାତା ବସନ୍ତ ମଞ୍ଜରୀ ଦେବୀଙ୍କର ଗୃନ୍ଦପୁର ରାଣୀ ନଅରରେ ହୃତ୍‌କ୍ରିୟା ବନ୍ଦ ହୋଇ ପରଲୋକ ହେଲା ।

୧୯୬୨ ମସିହାରେ ଓଡ଼ିଶାର ରାଜ୍ୟପାଳ ମାନ୍ୟବର ଅଯୋଧ୍ୟାନାଥ ଖୋସଲା ରଣପୁର ଆସିଥିଲେ । ବିଧାୟକ ଶ୍ରୀ ରାମଚନ୍ଦ୍ର ରାମ ଓ ପଞ୍ଚାୟତ ସମିତି ଚେୟାରମ୍ୟାନ୍ ଶ୍ରୀ ରମେଶ ଚନ୍ଦ୍ର ପଣ୍ଡାଙ୍କ ଉଦ୍ୟମରେ ରାଜ୍ୟପାଳଙ୍କ ସମ୍ମାନାର୍ଥେ ଏକ ବିରାଟ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା । ସେହି ବର୍ଷ ଚୀନ ଭାରତ ଆକ୍ରମଣ କରିଥିବାରୁ ରଣପୁରର ରାଜା ଫ୍ଲାଇଟ୍ ଲେଫ୍‌ଟ୍‌ନାଣ୍ଟ ଶ୍ରୀ ବ୍ରଜେନ୍ଦ୍ର ଚନ୍ଦ୍ର ସିଂହଦେଓ ନିଜର ସୁବର୍ଣ୍ଣ ଓ ରୌପ୍ୟ ନିର୍ମିତ ଦୁଇଟି ସିଂହାସନ ପ୍ରତିରକ୍ଷା ପାଣ୍ଠିକୁ ଦାନ କରିଥିଲେ । ସମ୍ପ୍ରତି ତାହା ଓଡ଼ିଶା ସଂଗ୍ରହାଳୟରେ ଅଛି । ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସାମରିକ ବିଭାଗରୁ ଅବସର ନେଇଥିଲେ ମଧ୍ୟ ଚୀନ ଆକ୍ରମଣ ଯୋଗୁଁ ଯୁଦ୍ଧରେ ଯୋଗ ଦେଇଥିଲେ । ସେ ପୂର୍ବରୁ ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦଙ୍କର ଏ.ଡି.ସି. ଥିଲେ । ଜଣେ ଦକ୍ଷ ବିମାନ ଚାଳକ ରୂପେ ତାଙ୍କର ସୁନାମ ଥିଲା ।

ବିଧାୟକ ଶ୍ରୀ ରାମଚନ୍ଦ୍ର ରାମ୍‌ଙ୍କ ସମୟରେ ପଞ୍ଚାୟତ ସମିତି ଗୃହ ନିର୍ମିତ ହୋଇଥିଲା । ତତ୍କାଳୀନ ଗ୍ରାମଗୋଷ୍ଠୀ ଓ ପଞ୍ଚାୟତ ରାଜ ମନ୍ତ୍ରୀ ସ୍ୱଗତ ବୃନ୍ଦାବନ ନାୟକ ଏହା ଉଦ୍‌ଘାଟନ କରିଥିଲେ ।

୧୯୬୪ ମସିହା ଅପ୍ରେଲ ପହିଲା ଦିନ ରଣପୁର ଗଡ଼ ଓ ଗୋପାଳପୁର ଗ୍ରାମରେ ବୈଦ୍ୟୁତିକ ଆଲୋକ ସଂଯୋଗ ହୋଇଥିଲା । ଏହା ଓଡ଼ିଶାର ତତ୍କାଳୀନ ସରବରାହ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ତା ୭।୫।୧୯୬୬ ରିଖରେ ରଣପୁରର ପ୍ରଖ୍ୟାତଯଶା ତହସିଲଦାର ତଥା ସୁସାହିତ୍ୟିକ ଶ୍ରୀ ସୁରେନ୍ଦ୍ରନାଥ ଶତପଥୀଙ୍କ ପ୍ରଚେଷ୍ଟା

ଫଳରେ କର୍ଙ୍କିଆ ନିବାସୀ ସ୍ୱର୍ଗତ ପିତବାସ ଜୟସିଂହଙ୍କ ଆର୍ଥିକ ସହାୟତାରେ ରଣପୁର ଗଡ଼ ଶ୍ରୀ ଜଗନ୍ନାଥ ମନ୍ଦିର ମଧ୍ୟରେ ମହାଲକ୍ଷ୍ମୀଙ୍କ ବିଗ୍ରହ ପ୍ରତିଷ୍ଠା ହୋଇ ସେବା ପୂଜାର ବ୍ୟବସ୍ଥା ହୋଇଥିଲା ।

୧୯୬୭ ମସିହା ସାଧାରଣ ନିର୍ବାଚନରେ ରଣପୁର ନିର୍ବାଚନ ମଣ୍ଡଳୀରୁ ରାଜା ବ୍ରଜେନ୍ଦ୍ର ଚନ୍ଦ୍ର ସିଂହଦେଓ ଙ୍କ ପରେ ବଜ୍ରଧର ନରେନ୍ଦ୍ର ମହାପାତ୍ର କଂଗ୍ରେସ ପ୍ରାର୍ଥୀରୂପେ ନିର୍ବାଚିତ ହୋଇଥିଲେ । ତାଙ୍କ ଉଦ୍ୟମରେ ରାଜ-ସୁନାଖଳା ଡିସ୍‌ପେନ୍‌ସାରୀ ଏକ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ପରିଣତ ହେବା ଓ ଭାରଆଠାରେ ନୂତନ ଡିସ୍‌ପେନ୍‌ସାରୀ ପ୍ରତିଷ୍ଠା ହେବା ଉଲ୍ଲେଖଯୋଗ୍ୟ ଘଟଣା ଅଟେ । ସେ ୧୯୭୦ ମସିହାରେ ସ୍ୱତନ୍ତ୍ର ଦଳରେ ଯୋଗ ଦେଇଥିଲେ । ୧୯୬୯ ମସିହାରେ ଗାନ୍ଧୀ ଶତବାର୍ଷିକୀ ପାଳନ ଅବସରରେ ରଣପୁର ଗଡ଼ ପଞ୍ଚୁଦୋଳ ପଡିଆ ପ୍ରାଙ୍ଗଣରେ ମହାତ୍ମା ଗାନ୍ଧୀ, ରଘୁ ଓ ଦିବାକରଙ୍କ ପ୍ରସ୍ତର-ମୂର୍ତ୍ତି ସ୍ଥାପିତ ହୋଇଥିଲା । ଏହା ଡଃ ହରେକୃଷ୍ଣ ମହତାବ ଉଦ୍‌ଘାଟନ କରିଥିଲେ ।

୧୯୭୧ ମସିହା ସାଧାରଣ ନିର୍ବାଚନରେ ମାର୍କସବାଦୀ କମ୍ୟୁନିଷ୍ଟ ଦଳ ପ୍ରାର୍ଥୀ ଶ୍ରୀ ରମେଶଚନ୍ଦ୍ର ମଣ୍ଡା ନିର୍ବାଚିତ ହୋଇଥିଲେ । ସେ କ୍ରମାଗତ ତିନିଥର ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଏହା ପୂର୍ବରୁ ଦୁଇ ଥର ରଣପୁର ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଥିଲେ । ସେ ଦୀର୍ଘଦିନ ଧରି ରଣପୁର ରାଜନୀତିର କେନ୍ଦ୍ରବିନ୍ଦୁ ଥିଲେ । ତତ୍କାଳୀନ ମାର୍କସ୍‌ବାଦୀ କମ୍ୟୁନିଷ୍ଟ ଦଳର ସଂଗଠନ ଦୃଢ଼ଥିଲା ଓ ଦଳୀୟ ଶୋଭଯାତ୍ରା ଆକର୍ଷଣୀୟ ଥିଲା । ତାଙ୍କ ସମୟରେ ଭେଟବର, ଦାନ୍ତକାଠିଆ ଓ ବଧିପାଟଣା – 'ଗୁମ୍ଫା' କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ ହୋଇଥିଲା । ଏହା ବ୍ୟତୀତ ରଣପୁର ଗଡ଼ଠାରେ ଏକ ମୁନ୍‌ସିଫ୍ କୋର୍ଟ ଓଡ଼ିଶା ହାଇକୋର୍ଟର ତତ୍କାଳୀନ ମୁଖ୍ୟ ବିଚାରପତି ମାନ୍ୟବର ଗତିକୃଷ୍ଣ ମିଶ୍ରଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା ।

୧୯୮୦ ଓ ୧୯୮୫ ସାଧାରଣ ନିର୍ବାଚନରେ କଂଗ୍ରେସ (ଇ) ଦଳ ପ୍ରାର୍ଥୀ ଶ୍ରୀ ରମାକାନ୍ତ ମିଶ୍ର ବିଧାୟକ ରୂପେ ନିର୍ବାଚିତ ହୋଇଛନ୍ତି । ସେ ଜଣେ ଗାନ୍ଧିବାଦୀ ଓ ଦୃଢ଼ମନା ବ୍ୟକ୍ତିରୂପେ ପରିଚିତ । ତାଙ୍କ ଉଦ୍ୟମରେ ରଣପୁର ଶରଣକୂଳ ରାସ୍ତାର ଉନ୍ନତି ଓ ଏହି ରାସ୍ତାରେ ୨ଟି ପୋଲ ନିର୍ମାଣ, ଭଗବତି ରଣ୍ଡା, ସାପୁଆଣୀ ଓ ବାଣ୍ଟାବନ୍ଧ କ୍ଷୁଦ୍ର ଜଳସେଚନ ଯୋଜନା, ଗୋପାଳପୁର କଢଡାପଲ୍ଲି ରାସ୍ତା ପିଚୁ ନିର୍ମାଣ, ରଣପୁର ଗଡ଼ରେ ନଆଁ ଲିଭା କେନ୍ଦ୍ର

ପ୍ରତିଷ୍ଠା ଓ ରାଜ-ସୁନାଖଳା ପି. ଏର୍. ସି କୁ ଅପଗ୍ରେଡେଡ୍ ପି. ଏଚ୍. ସି ରେ ପରିଣତ କରିବା ପ୍ରଭୃତି ଉଲ୍ଲେଖଯୋଗ୍ୟ କାର୍ଯ୍ୟ ଅଟେ । ଏହା ବ୍ୟତୀତ ଶରଣକୁଳ ଠାରୁ ଗୋଡିପଡା, ଦର୍ପନାରାୟଣପୁର, ରଣପୁର ଟାଉନ, ମିଟକା, ଜଙ୍କିଆ, ନବକାରପୁର, ବକୁ ଓ ବାର ନରସିଂହପୁର ଦେଇ ଧୁସା ପର୍ଯ୍ୟନ୍ତ ନୂତନ ଭାବେ ନିର୍ମିତ ହେବାକୁ ଯାଉଥିବା ଦୁଇ ନମ୍ବର ଜଗନ୍ନାଥ ସଡକ ତାଙ୍କର ବଳିଷ୍ଠ ଉଦ୍ୟମର ଫଳ ଅଟେ । ଏହି ରାସ୍ତା ନୂତନ ଯୋଜନାରେ ରାଜ୍ୟ ରାଜପଥ (State Highway) ଅନ୍ତର୍ଭୁକ୍ତ ହୋଇଛି । ଏହି ନୂତନ ରାସ୍ତାଯୋଗୁଁ ନୟାଗଡ଼ ଠାରୁ ଖୋର୍ଦ୍ଧା, ଭୁବନେଶ୍ୱର ଦେଇ ପୁରୀର ଦୂରତ୍ୱ ପ୍ରାୟ ୬୦ କିଲୋମିଟର କମ୍ ହେଉଥିବା ଜଣାପଡ଼ୁଛି ।

୧୯୭୨ ମସିହା ପର୍ଯ୍ୟନ୍ତ ରଣପୁରରେ କୌଣସି ବ୍ୟାଙ୍କ ନଥିଲା । ସର୍ବପ୍ରଥମେ ୧୯୭୧ ମସିହାରେ ରଣପୁର ଗଡରେ ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କର ଏକ ଶାଖା ପ୍ରତିଷ୍ଠିତ ହୋଇଥିଲା । ଏହାପରେ ବୃନ୍ଦପୁର ଓ ରାଜ-ସୁନାଖଳାରେ ଭାରତୀୟ ଷ୍ଟେଟ ବ୍ୟାଙ୍କର ଶାଖାମାନ ଏବଂ ରାଜ-ସୁନାଖଳା, ଗୋପାଳପୁର ଓ ଗଡ ବାଣୀକିଲୋ ଠାରେ ପୁରୀ ଗ୍ରାମ୍ୟ ବ୍ୟାଙ୍କର ଶାଖାମାନ ପ୍ରତିଷ୍ଠା ଲାଭ କରିଛି ।

ତାର ଯୋଗାଯୋଗ କ୍ଷେତ୍ରରେ ରଣପୁରର ଉଲ୍ଲେଖନୀୟ ପ୍ରଗତି ସାଧିତ ହୋଇଛି । ରଣପୁର ଗଡ଼ ଓ ରାଜ-ସୁନାଖଳା ଠାରେ ଦୁଇଟି ଟେଲି-ଫୋନ୍ ଏକ୍ସଚେଞ୍ଜ ବୃନ୍ଦପୁର, ଗୋପାଳପୁର, ବାସୁଦିଆ, ତେଲିପାଟଣା, ଲୋଧାଚୂଆ, କାସନ୍ଦା ଓ ବ୍ରଜରାଜପୁର ଠାରେ ପବ୍ଲିକ କଲ ଅଫିସ ଖୋଲା ଯାଇଛି । ଲୋକସଭା ସଦସ୍ୟ ଶ୍ରୀ ବ୍ରଜମୋହନ ମହାନ୍ତିଙ୍କ ପ୍ରଗାଢ଼ ଉଦ୍ୟମ ଏବଂ ଚମ୍ପତିପୁର ନିବାସୀ ଶ୍ରୀ ବଜକିଶୋର ଜେନା ଓ ବ୍ରଜକିଶୋର ଜେନାଙ୍କ ସହଯୋଗ ଫଳରେ ଉପରୋକ୍ତ ତାର ଯୋଗାଯୋଗ କ୍ଷେତ୍ରରେ ସାଫଲ୍ୟ ହାସଲ ହୋଇଛି ।

୧୯୯୦ ମସିହାରେ ହୋଇଥିବା ସାଧାରଣ ନିର୍ବାଚନରେ ଜନତା ଦଳ ପ୍ରାର୍ଥୀ ଶ୍ରୀ ଶରତ ଚନ୍ଦ୍ର ମିଶ୍ର ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ଏହାଙ୍କ ସମୟରେ ଗଡ ବାଣୀକିଲୋରେ ଏକ +୨ ମହାବିଦ୍ୟାଳୟ ଓ ମୟୂରଝଳିଆ ଠାରେ ଇଣ୍ଡିଅନ ଓଭରସିଜ୍ ବ୍ୟାଙ୍କର ଏକ ଶାଖା ପ୍ରତିଷ୍ଠା ହୋଇଛି ।

ରଣପୁର କେତେକ କ୍ଷେତ୍ରରେ ପ୍ରଗତି ହାସଲ କରିଥିଲେ ମଧ୍ୟ ଅନେକ କ୍ଷେତ୍ରରେ ପଛରେ ପଡି ରହିଛି । ବିଶେଷ କରି ଗଡଜାତ ମିଶ୍ରଣ ପରଠାରୁ ରଣପୁର ଏକ ସ୍ୱତନ୍ତ୍ର ସବ୍-ଡିଭିଜନ ହେବାପାଇଁ ହୋଇଥିବା ଦାବି ଅଦ୍ୟାବଧି ଉପେକ୍ଷିତ ହୋଇ ରହିଛି ।

# ଭୌଗୋଳିକ ରଣପୁର

ରଣପୁର ଏକ ପ୍ରାଚୀନ ରାଜ୍ୟ । ଖ୍ରୀଷ୍ଟପୂର୍ବ ୧୭୧୬ରେ ଏହି ରାଜ୍ୟ ସ୍ଥାପିତ ହୋଇଥିବା ରଣପୁର ରାଜ ବଂଶାବଳୀରୁ ଜଣାପଡେ । କିନ୍ତୁ ଏହାର ସଠିକତା ଗବେଷଣା ସାପେକ୍ଷ । ଏହି ରାଜ୍ୟ ଏକଦା କଙ୍ଗୋଦ ରାଜ୍ୟ ଅନ୍ତର୍ଗତ ହୋଇଥିଲା । ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ କଙ୍ଗୋଦ ରାଜ୍ୟର ସ୍ଥିତି ଥିଲା । ଏହି କଙ୍ଗୋଦ ରାଜ୍ୟରେ ଆଧୁନିକ ବାଣପୁର, ଟାଙ୍ଗୀ, ନାରଙ୍ଗାରପୁର, ରଣପୁର, ଓଡଗାଁ, ଖଲ୍ଲିକୋଟ, ଭଞ୍ଜନଗର ଓ ଆସିକା ପ୍ରଭୃତି ଅଞ୍ଚଳ ଥିବା ଅନୁମାନ କରାଯାଇପାରେ । ଶାରଳା ଦାସଙ୍କ ମହାଭାରତରୁ ରଣପୁର ରାଜ୍ୟର ପ୍ରାଚୀନତା ସମ୍ବନ୍ଧରେ ଜଣାପଡେ । ମହାଭାରତର ଉଦ୍ୟୋଗ ପର୍ବରେ ରଣପୁର ରାଜା ବଜ୍ର ସୈନ୍ୟ ସାମନ୍ତ ଧରି କୌରବଙ୍କ ସପକ୍ଷରେ ଯୁଦ୍ଧ କରିଥିବା ଉଲ୍ଲେଖ ଅଛି ।

ପଞ୍ଚମ ଶତାବ୍ଦୀର ତାମ୍ର ଫଳକ ଯଥାକ୍ରମେ ଓଡ୍ରପଦା ଓ ରଣ୍ଡା ଗ୍ରାମରୁ ମିଳିଛି । ଓଡ୍ରପଦା ଗ୍ରାମରୁ ମିଳିଥିବା ଦୁଇଟି ତାମ୍ର ଫଳକ ପ୍ରଥମେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ରାଜ୍ୟ ସଂଗ୍ରହାଳୟରେ ଦେବା ପରେ ପଣ୍ଡିତ ଡଃ ସତ୍ୟନାରାୟଣ ରାଜଗୁରୁ ଏହା ପାଠ କରିଥିଲେ । ତାମ୍ର ଫଳକ ମିଳିଥିବା ଓଡ୍ରପଦା ଗ୍ରାମ ସେଥିରେ ଓଡ୍ରଗ୍ରାମକ ରୂପେ ଉଲ୍ଲେଖ ଥିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଘଟଣା ମଧ୍ୟ ଉଲ୍ଲେଖ ଅଛି । ଏହି ତାମ୍ର ଫଳକ ଦୁଇଟିର ଆୟତନ ୭'୫'' × ୪'୫'' ଅଟେ । ଏହା ବ୍ୟତୀତ ରଣ୍ଡା ଗ୍ରାମରୁ ଖଣ୍ଡେଗୋଟି ତାମ୍ର ଫଳକ ମିଳିଛି । ଏହାର ଆୟତନ ୭'୪'' × ୩'୫'' ଅଟେ । ଏହି ତାମ୍ର ଫଳକ ଡଃ ଡି. ସି. ସରକାର ପାଠ କରିଛନ୍ତି ।

## ଅବସ୍ଥିତି ଓ ଆୟତନ—

ରଣପୁର ରାଜ୍ୟ ପ୍ରଥମେ ଏକ ବୃହତ୍ ରାଜ୍ୟ ଥାଇ ପରେ ସଙ୍କୁଚିତ ହୋଇ ଯାଇଛି । ଏହି ରାଜ୍ୟର ପଶ୍ଚିମରେ ନୟାଗଡ ରାଜ୍ୟ, ପୂର୍ବ, ଉତ୍ତର

ଓ ଦକ୍ଷିଣ ଦଗରେ ଖୋର୍ଦ୍ଧା ଖାସ୍‌ମାହାଲ୍ ଅବସ୍ଥିତ । ଏହା ବିଷୁବ ରେଖାର ଉତ୍ତର ଦଗରେ ୧୯.୫ ଡଗ୍ରୀ ଉତ୍ତର ଅକ୍ଷାଂଶରୁ ୨୦.୧୮ ଡଗ୍ରୀ ମଧ୍ୟରେ ଏବଂ ପୂର୍ବ ଦ୍ରାଘିମାର ୮୫.୦୧ ଡଗ୍ରୀ ଓ ୮୫.୩ ଡଗ୍ରୀ ମଧ୍ୟରେ ଅବସ୍ଥିତ । ଏହି ପୂର୍ବତନ ରାଜ୍ୟ ଉତ୍ତର ପୂର୍ବଘାଟ ପର୍ବତମାଳାର ପୂର୍ବଭାଗରେ ଅବସ୍ଥିତ ।

ରଣପୁର ରାଜ୍ୟର ଆୟତନ ୨୦୪.୭ ବର୍ଗ ମାଇଲ ବା ୫୨୪.୦୩୭ ବର୍ଗ କିଲୋମିଟର । ପୂର୍ବେ ରଣପୁରକୁ ଚଉଦ କୋଣ ମୂଳକ କୁହାଯାଉଥିଲା । ପୂର୍ବ ପଶ୍ଚିମରେ ଏହାର ବିସ୍ତୃତି ୧୨ ମାଇଲ ହୋଇଥିବା ସ୍ଥଳେ ଦକ୍ଷିଣ ପାର୍ଶ୍ୱର ଶେଷରେ ଏହାର ପୂର୍ବ ପଶ୍ଚିମ ବିସ୍ତୃତି ୨୧ ମାଇଲ ଅଟେ ।

## ପର୍ବତମାଳା—

ଗୁଡ଼ଗୋଟି ଦୀର୍ଘ ନିରବଚ୍ଛିନ୍ନ ପର୍ବତମାଳାର ପାଦଦେଶ ଓ ଉପତ୍ୟକାରେ ୨୨୧ ଗୋଟି ରେଭେନ୍ୟୁ ଗ୍ରାମମାନଙ୍କରେ ଏହାର ଜନବସତି । ଉତ୍ତର ଦିଗରୁ ଦକ୍ଷିଣ ଦିଗକୁ କ୍ରମାନ୍ୱୟରେ ଏହି ପର୍ବତଗୁଡ଼ିକ ହେଲେ— (୧) ଶୁଳିଆ (କୋଟଗଡ଼) ପର୍ବତମାଳା (୨) ମଣିନାଗ ପର୍ବତମାଳା (୩) ଧାମା ପର୍ବତମାଳା (୪) ଶଙ୍କରଶାଳ ପର୍ବତମାଳା । ଉପରୋକ୍ତ ୪ ଗୋଟି ପର୍ବତମାଳା ବ୍ୟତୀତ ଅନେକ ଛୋଟ ଛୋଟ ପାହାଡ଼ରେ ରାଜ୍ୟଟି ପରିପୂର୍ଣ୍ଣ । ଏହି ରାଜ୍ୟ ସମୁଦ୍ର ପତ୍ତନଠାରୁ ୫୦୦ରୁ ୨୧୦୦ ଫୁଟ ଉଚ୍ଚତା ମଧ୍ୟରେ ଅବସ୍ଥିତ । ପର୍ବତ ଶୃଙ୍ଗମାନଙ୍କ ମଧ୍ୟରେ କରଜଗ-୨୦୭୮ ଫୁଟ, ଟଗମରା-୨୦୪୯ ଫୁଟ, ଗୌଣିଆ-୨୦୧୮ ଫୁଟ, ଧାମା-୧୮୯୩ ଫୁଟ, ଶୁଳିଆ-୧୪୦୧ ଫୁଟ ଏବଂ ମୈନାକ-୧୮୯୮ ଫୁଟ ଉଚ୍ଚତା ବିଶିଷ୍ଟ ଅଟନ୍ତି ।

## ଗ୍ରାମ ସମୂହ—

ପୂର୍ବେ ରଣପୁର ରାଜ୍ୟରେ ରାଜା ଓ ରାଜ କର୍ମଚାରୀମାନଙ୍କ ନିମନ୍ତେ ନିମ୍ନଲିଖିତ ଗ୍ରାମଗୁଡ଼ିକ ଶିବିର ଗ୍ରାମରୂପେ ସ୍ଥିର ହୋଇଥିଲା । ଏହି ଗ୍ରାମ ଗୁଡ଼ିକ ହେଲା (୧) ପଟିଆ (୨) ଗୋପାଳପୁର (୩) ସିନ୍ଦୁରିଆ (୪) ରଣପୁର ଗଡ଼ (୫) ବାଉଁଶ ଗଡ଼ (୬) ଗୌରାଙ୍ଗପୁର (୭) ଲୋଧାଚୁଆ (୮) ଗଡ଼ ବାଣୀକିଲୋ (୯) ସୁର୍କାବାଡ଼ (୧୦) କଣ୍ଡରାଗାଡ଼ିଆ (୧୧) ରାଜ-ସୁନାଖଳା (୧୨) ନରେନ୍ଦ୍ରପୁର ।

ସ୍ୱାଧୀନତା ପୂର୍ବରୁ ରଣପୁର ରାଜ୍ୟରେ ୨୯୮ ଗୋଟି ଗ୍ରାମ ଥିଲା । ୧୯୫୨ ମସିହା ବନ୍ଦୋବସ୍ତ ପରେ ରାଜସ୍ୱ ଗ୍ରାମ ସଂଖ୍ୟା ୨୨୧କୁ କମି ଆସିଛି ।

ରାଜସ୍ୱ ଆଦାୟର ସୁବିଧା ଦୃଷ୍ଟିରୁ ଏହା ୧୯ଟି ପ୍ରଗଣାରେ ବିଭକ୍ତ ହୋଇଥିଲା । ପ୍ରଗଣା ଗୁଡ଼ିକ ହେଲା — (୧) କୋଟଗଡ଼, (୨) କାସଦା, (୩) ଗଡ଼ବାଣୀକଲ (୪) ସାନ ବେଡ଼, (୫) ଚୌକବେଢ଼, (୬) ପଞ୍ଚ ପଲ୍ଲୀ, (୭) ନଜଗଡ଼, (୮) ଲଡ଼ାର, (୯) ନରସିଂହପୁର, (୧୦) ମୟୂରଝାଳିଆ, (୧୧) ଗଣ୍ଡି ବେଡ଼, (୧୨) କଣ୍ଟିମାଳ, (୧୩) ନାକଠଣା, (୧୪) ଚମ୍ପାଗଡ଼, (୧୫) କନ୍ଧନୟାଗଡ଼, (୧୬) ପଠିଆ, (୧୭) ଜଳପଡ଼ା, (୧୮) ବଡ଼ମାଳ (୧୯) ସାନମାଳ ।

ରଣପୁର ଏକ ତହସିଲରେ ପରିଣତ ହେଲା । ଏଣୁ ପ୍ରଗଣା ପରିବର୍ତ୍ତେ ଏହା ପ୍ରଥମେ ପାଞ୍ଚଗୋଟି ରାଜସ୍ୱ ମଣ୍ଡଳରେ ବିଭକ୍ତ ହେଲା । ଏହି ରାଜସ୍ୱ ମଣ୍ଡଳ ଗୁଡ଼ିକ ହେଲା (୧) ରଣପୁର ଗଡ଼, (୨) ରାଜ ସୁନାଖଳା, (୩) ଲୋଧାଚୂଆ, (୪) ଗୋପାଳପୁର, (୫) ବ୍ରହ୍ମପୁର । ପରେ ପୁନର୍ଗଠନ ଅନୁଯାୟୀ ତିନୋଟି ନୂତନ ରାଜସ୍ୱ ମଣ୍ଡଳ ସୃଷ୍ଟି ହେଲା । ଏଗୁଡ଼ିକ ହେଲା (୬) ଯଶୋଦାପୁର, (୭) ବାଉଁଶଗଡ଼, (୮) ଝାଡ଼ପଡ଼ା ।

୧୯୫୦ ମସିହାରେ ରଣପୁରରେ ବନ୍ଦୋବସ୍ତ ହୋଇଥିଲା । ବନ୍ଦୋବସ୍ତ ଅନୁଯାୟୀ ରଣପୁରରେ ୨୨୧ଟି ଗ୍ରାମ ଥିବା ଜଣାପଡ଼େ । ଏହି ଗ୍ରାମଗୁଡ଼ିକର ନାମ ପାଠକମାନଙ୍କ ଅବଗତି ନିମନ୍ତେ ନିମ୍ନରେ ପ୍ରଦାନ କରଗଲା —

୧-ଅଡ଼ାଲ, ୨-ଆଖୁପଦର, ୩-ଆମ୍ବଝର, ୪-ଅଧାରୁଆ ସାମନ୍ତ-ସିଂହାରପୁର, ୫-ଆଙ୍କୁଲ ପଲ୍ଲୀ, ୬-ଅଁଳା ପଲ୍ଲୀ, ୭-ଅରଡ଼ା, ୮-ଅରଖପଲ୍ଲୀ, ୯-ଅର୍ଜ୍ଜୁନପୁର, ୧୦-ବଡ଼ ବରମୂଳ, ୧୧-ବାଦଭୂଇଁ, ୧୨-ବଡ଼ ଗୁକୁଣ୍ଡାଝର, ୧୩-ବଡ଼ ପଥୁରିଆ, ୧୪-ବାଧ୍ ପାଟଣା, ୧୫-ବଗଲ, ୧୬-ବଜ୍ରକୋଟ, ୧୭-ବଳଭଦ୍ରପୁର (କାସଦା ଜିଲ୍ଲା), ୧୮-ବଳଭଦ୍ରପୁର (ଗଣ୍ଡି ବେଡ଼ ଜିଲା), ୧୯-ବଳରାମପୁର (ନଜଗଡ଼ ଜିଲ୍ଲା), ୨୦-ବଳରାମପୁର (ନାକଠଣା ଜିଲା), ୨୧-ବାଲିଆ, ୨୨-ବାମଡ଼ା, ୨୩-ବନମୁଣ୍ଡା, ୨୪-ବାଙ୍କପୁର, ୨୫-ବାରଙ୍ଗାଡ଼ିଆ, ୨୬ ବରମୂଳ, ୨୭-ବରପଲ୍ଲୀ (କାସଦା ଜିଲା), ୨୮-ବରପଲ୍ଲୀ [ପଠିଆ ଜିଲ୍ଲା], ୨୯-ବସନ୍ତପୁର, ୩୦-ବାହୁଦଆ, ୩୧-ବାଉଁଶଗଡ଼, ୩୨-ବେଲପର କୋଇଲମା; ୩୩ ବେଲଗାଁ, ୩୪-ବେଣ୍ଟେ, ୩୫-ବେଣୁଧରପୁର, ୩୬-ବେତୁଲି, ୩୭-ଭାଲଗାଡ଼ିଆ, ୩୮-ଭେଟବର, ୩୯-ବିମ୍ବାଧରପୁର, ୪୦-ବିନୋଦ ପଡ଼ା [କୋଟଜିଲ୍ଲା], ୪୧-ବିନୋଦପଡ଼ା [ସାନବେଡ଼ ଜିଲ୍ଲା], ୪୨-ବୋକାଝାଇ, ୪୩-ବୋର ବୋର ଝର,

୪୪-ବ୍ରାହ୍ମଣ କୁମେଇ, ୪୫-ବ୍ରଜବଲ୍ଲଭପୁର, ୪୬-ବ୍ରଜବଜପୁର, ୪୭-ବ୍ରଜ-ସୁନ୍ଦରପୁର, ୪୮-ବୃନ୍ଦାବନ ବହାଲପୁର, ୪୯-ବୃନ୍ଦାବନପୁର, ୫୦-ଚମ୍ପୋଗଡ ୫୧ ଚମ୍ପୋପେଡ, ୫୨-ଚମ୍ପତିପୁର, ୫୩-ଚୁନ୍ଦପୁର, ୫୪-ଚନ୍ଦ୍ରମାଦେଇପୁର ୫୫ ଚନ୍ଦ୍ରାମଣିପୁର ୫୬-ଚୁରପଲ୍ଲୀ ୫୭-ଛପର କୋଇଲପା ୫୮-ଛତ୍ରପୁର ୫୯-ଦାମୋଦରପୁର ୬୦-ଡେଗବାଜ୍ ୬୧ ଦେଉଳ ୬୨-ଧାମଡା ୬୩ଡହଗାଁ ୬୪-ଡମିରଆ ୬୫ ଡମିରବାଡ ୬୬-ଗଛପଣ ୬୭-ଗାନ୍ଧଝର ୬୮ ଗମ୍ଭାର ଖୋଲ ୬୯ ଗ. ବାଣୀକଲ ୭୦-ଗଡ ବାଣୀକଲେ ୭୧ ଗିଡଧରପୁର ୭୨-ଗିରଣ୍ଡା ୭୩ ଗୋବର୍ଦ୍ଧନପୁର ୭୪ ଗୋଷ୍ଟସାହ୍ୱ ୭୫ ଗୋଳାପୋଖରୀ ୭୬ ଗୋପାଳପୁର ୭୭ ଗୋପୀମୋହନପୁର ୭୮-ଗୌଡଆପଡା (ପଞ୍ଚପଲ୍ଲୀ ଜଲ) ୭୯-ଗୌଡଆପଡା (କାସନ୍ଦା ଜଲ) ୮୦-ଗୌରଚନ୍ଦ୍ରପୁର ୮୧-ଗୌରାଙ୍ଗପୁର ୮୨-ଗୁଣ୍ଡୁରିଆ ୮୩ ଗୁଣ୍ଡୁରିବାଡ ୮୪-ହଂସବ ୮୫ ହଟପୁର ୮୬ ହରିପୁର ୮୭ ହିଂଜଳ ଗାଡଆ ୮୮-ଇଚ୍ଛାପୁର ୮୯-ଯଦୁପୁର ୯୦-ଜଗନ୍ନାଥପୁର ୯୧-ଜାଲହାର ୯୨ ଜାମୁଗଣ୍ଡ ୯୩-ଜାମୁସାହ୍ୱ ୯୪ ଜଙ୍କିଆ ୯୫-ଜଟପଡା ୯୬-ଜେମାଦେଇପୁର ୯୭-ଝାଡପଡା ୯୮-ଜୋକଗାଡଆ ୯୯ କଟପଡା ୧୦୦-କଦମ୍ବଖୋଲ ୧୦୧ କଳାମାଟିଆ ୧୦୨-କଣ୍ଡରଗାଡଆ ୧୦୩-କାଣ୍ଡପଡା ୧୦୪-କଣ୍ଡବସିଙ୍ଗ ୧୦୫-କନ୍ଦନସ୍ତାଗଡ ୧୦୬ କଙ୍କିଆ ୧୦୭-କରଡାପଲ ୧୦୮-କରଡାପଲ୍ଲୀ ୧୦୯-କଟକପଡା ୧୧୦-କଟକ ସହର ୧୧୧-କାସନ୍ଦା ୧୧୨ କେନ୍ଦୁଆ ୧୧୩ କେନ୍ଦୁପଲ୍ଲୀ ୧୧୪-କେରଣ୍ଡାଟାଙ୍ଗୀ ୧୧୫-କେଶିଆପଲ୍ଲୀ ୧୧୬-ଝଇରପଲ୍ଲୀ ୧୧୭-ଖଣ୍ଡିପି ୧୧୮ ଖାମଣ ୧୧୯-କ୍ଷେତ୍ରବଟପୁର ୧୨୦-କଆପଲ ୧୨୧-କୋଚଆପଲ୍ଲୀ ୧୨୨-କୋଦଳାପଲ୍ଲୀ ୧୨୩-କୋଟଗଡ ୧୨୪-କୋଟପୋଖରୀ (ସାନବାଡ ଜଲ) ୧୨୬ କୃଷ୍ଣଚନ୍ଦ୍ରପୁର ୧୨୭ କୃଷ୍ଣପୁର ୧୨୮-କୁଳାସର ୧୨୯-କୁଶପଲ ୧୩୦-କୁଟୁଣୀଶାଳା ୧୩୧ ଲଖମୃଣ୍ଡୁଳ ୧୩୨-ଲଖପଡା ୧୩୩ ଲକ୍ଷ୍ମୀନାରାୟଣପୁର ୧୩୪-ଲତାର ୧୩୫-ଲେଖନପୁର ୧୩୬-ଲେଧାଚୁଆ ୧୩୭-ମହଦପଲ ୧୩୮ ମଳପଡା ୧୩୯-ମଟିଆଟଣ୍ଡ ୧୪୦-ମାନପୁର (କାନ୍ଥମାଳ ଜଲ) ୧୪୧ ମାନପୁର (ଚୌକବେଢ ଜଲ) ୧୪୨-ମାର୍ଥାପଧର ୧୪୩-ମୟୂରଝାଳିଆ ୧୪୪ ମୁକ୍ତାପୁର ୧୪୫ ମୁସଝର ୧୪୬-ନଚ୍ଛୁପୁର ୧୪୭-ନାଗଝର ୧୪୮-ନାଙ୍କଠଣା ୧୪୯-ନମଗଡିଆ ୧୫୦ ନନ୍ଦପୁର ୧୫୧-ନରେନ୍ଦ୍ରପୁର ୧୫୨-ନରସିଂହପୁର ୧୫୩ ନାଥପୁର ୧୫୪-ନାଟିମ୍ ୧୫୫-ନେଳବାଡ ୧୫୬-ନେଳପଡା ୧୫୭-ନହଲ ପ୍ରସାଦ ୧୫୮-ନଳାଦ୍ରିପୁର

୧୫୯-ନିଳମଟଣ୍ଣି ୧୬୦-ନଗରକା'ରପୁର ୧୬୧-ନୃସିଂହପୁର-ଷାଙ୍ଗିସାହି ୧୬୨-ନୂଆ ଗାଁ ୧୬୩ ନୂଆପଡ଼ା ୧୬୪-ନୂଆପଲ୍ଲୀ ୧୬୫-ଓଡ଼ପଲ୍ଲ ୧୬୬-ଓସ୍ତପଡ଼ା ୧୬୭ ପାନକଭୂଇଁ ୧୬୮-ପାଇକସାହି ୧୬୯ ପାମ୍ପଡ଼ା ୧୭୦-ମଣେସପୁର ୧୭୧-ପାଟବେଳଣା ୧୭୨ ପାଟଣା ୧୭୩-ପାଟପୁର ୧୭୪-ପଥରପୁଞ୍ଜି ୧୭୫-ପଟିଆ ୧୭୬-ଟିମ୍ପଲ ୧୭୭-ପୋକସୁଙ୍ଗା ୧୭୮-ପୁରୁଣା ବସନ୍ତ ୧୭୯-ରାଧାମୋହନପୁର ୧୮୦-ରାଇପଡ଼ା ୧୮୧-ରାଜବଲ୍ଲଭପୁର ୧୮୨-ରାଜନଗର ୧୮୩-ରାଜସୁନାଖଳା ୧୮୪-ରମାବଲ ୧୮୫-ରାମଚନ୍ଦ୍ରପୁର ୧୮୬ ରଣ୍ଡା ୧୮୭-ରାଣୀଗାଡ଼ିଆ ୧୮୮-ରାଁଳା ୧୮୯-ରଣପୁର ଗଡ଼ ୧୯୦-ସାନ ଗୁକୁଣ୍ଡାଝର ୧୯୧-ସାନଗଡ଼ ୧୯୨-ସାନ କଳ ୧୯୩-ସାନ ପଥୁରିଆ ୧୯୪-ସାନ ଭୁଲଙ୍ଗା ୧୯୫-ଶଙ୍ଖପୋଡ଼ ୧୯୬-ଶଙ୍ଖମୂଳ ୧୯୭-ସଁମଡ଼ା ୧୯୮-ସାନ୍ତରାପୁର ୧୯୯-ଶାରଙ୍ଗଧରପୁର ୨୦୦-ଶକଟଶାଳ ୨୦୧ ଶ୍ୟାମଘନପୁର ୨୦୨-ସିନ୍ଦୁରିଆ (ଗଣ୍ଡିବେଡ଼ କଲ) ୨୦୩-ସିନ୍ଦୁରିଆ [କାସନ୍ଦା କଲ] ୨୦୪-ଶ୍ରୀକୃଷ୍ଣପୁର [ଚମ୍ପାଗଡ଼ କଲ] ୨୦୫-ଶ୍ରୀକୃଷ୍ଣପୁର [ପଞ୍ଚୁପଲ୍ଲୀ କଲ] ୨୦୬ ଶ୍ରୀକୁଟି ୨୦୭ ସୁଭଦ୍ରାପୁର ୨୦୮ ସୁଜଳ ୨୦୯ ସୁର୍କାବାଡ଼ [କାନ୍ଥମାଳ କଲ] ୨୧୦ ସୁର୍କାବାଡ଼ [କାସନ୍ଦା କଲ] ୨୧୧ ତାଳକଣି ୨୧୨-ତାଟିଆ ୨୧୩ ଟହଡ଼ହ ୨୧୪-ଥାନ ନଗର ୨୧୫ ଠେଙ୍ଗାପଲ୍ଲୀ ୨୧୬-ଠେଙ୍ଗାପଲ୍ଲୀ ଥାଠଣା ୨୧୭-ଟିକରାଇ ପଡ଼ା ୨୧୮-ଉକୁଟୁକୁମେଇ ୨୧୯-ଉପେନ୍ଦ୍ରପୁର ୨୨୦-ଉଆଁଇଲ ବାଉରିପୁର ୨୨୧-ଓ୍ୟାଉପଡ଼ା ।

# ରଣପୁରର ସାହିତ୍ୟିକ

ରଣପୁର ରାଜ୍ୟରେ ବହୁ କବି ଓ ଲେଖକ ଜନ୍ମଗ୍ରହଣ କରି ଓ କେତେକ ଏଠାରେ ଅବସ୍ଥାନ କରି ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଅଛନ୍ତି । ସେମାନଙ୍କ ମଧ୍ୟରୁ କବି ଦାସରଥି ଦାସ, ଶିଶୁ ବନମାଳୀ ଦାସ, ବିଷ୍ଣୁ ଦାସ, ସନ୍ଥ ଅଚ୍ୟୁତାନନ୍ଦ ଦାସ, ଭକ୍ତଚରଣ ଦାସ ଓ ଦୈତାରି ଭୂଜବଳ ପ୍ରମୁଖ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର କବିରୂପେ ପରିଚିତ । ପରବର୍ତ୍ତୀ କାଳରେ ରଣପୁର ମାଟିରେ କେତେକ କୃତି ସନ୍ତାନ କବି ଓ ଲେଖକ ରୂପେ ସୁପ୍ରତିଷ୍ଠିତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ପ୍ରଫେସର ଡ଼ଃ ଗୋପାଳଚନ୍ଦ୍ର ମିଶ୍ର, ଅଗାଧୁ ଭଞ୍ଜ, ନୀଳକଣ୍ଠ ମିଶ୍ର, ପଣ୍ଡିତ ନାରାୟଣ ମହାପାତ୍ର

ପ୍ରମୁଖ ପ୍ରଧାନ ଅଟନ୍ତି । ପୁରାତନ ଓ ନୂତନ କବି, ଲେଖକ ମାନଙ୍କର ନାମ ଓ ରଚନା ନିମ୍ନରେ ପ୍ରଦାନ କଲି ।

୧ । ଦାସରଥି ଦାସ— ଶ୍ରୀକୃଷ୍ଣ ବାଲ୍ୟଲୀଳା ।

୨ । ଶିଶୁ ବନମାଳୀ ଦାସ— ବନମାଳୀ ରାସ

୩ । ବିଷ୍ଣୁ ଦାସ — ଲୀଳାବତୀ, କଳାବତୀ, ସାବିତ୍ରୀ ଚରିତ, ପ୍ରେମାଲୋଚନା

୪ । ସନ୍ଥ ଅଚ୍ୟୁତାନନ୍ଦ ଦାସ ହରିବଂଶ, ଗୋପାଳଙ୍କ ଓଗାଳ, ଲହଡି ଭେଳ ଅନନ୍ତ ଗୋଇ ଇତ୍ୟାଦି

୫ । ଭକ୍ତଚରଣ ଦାସ— ମଥୁରା ମଙ୍ଗଳ

୬ । ଦୈତାରି ଭୁଜବଳ— ଶ୍ରୀ ରାମଲୀଳା

୭ । ଦାସରଥି ମିଶ୍ର – ଲିଙ୍ଗ ପୁରାଣ, ବିକ୍ରମ ଉର୍ବଶୀ

୮ । ରାମଚନ୍ଦ୍ର ଭ୍ରମରବର ରାୟସାମନ୍ତ – ଦୁର୍ଜୟମାନ, ବିରହମାନ

୯ । ଯୋଗୀନାଥ ପଟ୍ଟନାୟକ— ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

୧୦ । କବିଚନ୍ଦ୍ର ଅଗାଧୁ ପଟ୍ଟଯୋଶୀ— ବହୁ ପୁସ୍ତିକାର ରଚୟିତା

୧୧ । ଶ୍ରୀଧର ମିଶ୍ର — "ରଣପୁର-ନଗାଗଡ଼ ଯୁଦ୍ଧ" କାବ୍ୟ

୧୨ । କବିଚନ୍ଦ୍ର ବେଣୁଧର ପଟ୍ଟନାୟକ— ମାନ ମାଧୁରୀ, ସଙ୍ଗୀତ କଲ୍ଲୋଳ, ସଙ୍ଗୀତ କଳାନିଧି, ମାନ ଭଞ୍ଜନ, ବାଲ୍ୟଲୀଳା, ବିଦଗ୍ଧ ମାଧବ, ଚନ୍ଦ୍ରାବତୀ ବିଳାସ, ବେଣୁଧର ପଦ୍ୟାବଳୀ, ଅଗ୍ନି ପୁରାଣ, ମହାଲକ୍ଷ୍ମୀ ପୁରାଣ, ଜଗନ୍ନାଥ ପୁରାଣ, ଗୀତ କଳ୍ପତରୁ, ରଘୁନାଥ ଜଣାଣ ଓ ମଣିନାଗ ଜଣାଣ ଆଦି ବହୁ ଗ୍ରନ୍ଥ ରଚନା କରିଛନ୍ତି ।

୧୩ । ଗୋପୀନାଥ ସିଂହଦେଓ— ନୈଷଧ ଓ କୁମାର ସମ୍ଭବ ଓଡ଼ିଆ ଅନୁବାଦ

୧୪ । ଅରକ୍ଷିତ ମହାରଣା— 'ରଣପୁର ପ୍ରଜାଙ୍କ ଦୁଃଖ କାହାଣୀ'

୧୫ । ରଘୁନାଥ ମହାନ୍ତି— ମାରଣା ଗଡ, ଶବର ବାଳା, କ୍ରୋଧ ଲାଲସା, ସଙ୍ଗୀତ ସୁଧା ସମୁଦ୍ର, କୁନ୍ତଳା, ସଙ୍ଗୀତ ମୋହନ ଯୋଗ, ଅହଲ୍ୟା ଓ ଇଳା

୧୬ । ଦିବାକର ପଟ୍ଟନାୟକ— ଜାତକାନ୍ତାଙ୍କର, ଝଣ୍ଡାପୂତ ଷଷ୍ଠିସ୍ତୁ ପ୍ରଭ, ଅର୍ଣ୍ଣେଶ୍ୱର ଦେବଙ୍କ ଜଣାଣ

୧୭ । ପଣ୍ଡିତ ନାରାୟଣ ମହାପାତ୍ର— ମୌଳିକ ବ୍ୟାକରଣ, ସଙ୍ଗସାର ବ୍ୟାକରଣ, ଶ୍ଳୋକମାଳା ୧ମ ୨ୟ ଓ ୩ୟ ଖଣ୍ଡ ।

୧୮ । ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର— ବିଦ୍ରୋହୀ ଦିବାକର, କାକଳୀ, ବନ୍ୟ ମଲ୍ଲୀ, ପାନ୍ଥଶାଳୀ, ପୁନଶ୍ଚ ପୁରୁଷୋତ୍ତମ, ପୁନଶ୍ଚ ସମୁଦ୍ର, ରୁକ୍ଷ ଅନୁଭୂତି, ଆଧୁନିକ ଓଡ଼ିଆ ସାହିତ୍ୟ ଓ ସାହିତ୍ୟକାର, ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ, ନିବେଦିତା, ବନ ମର୍ମର, କୁଆ କୋଇଲି, ସତ୍ୟାଗ୍ରହୀ, ଗୃହକୋଠାରୁ ଦୂରେ, ସୋଭିଏତ ସାହିତ୍ୟିକ ପତ୍ରାବଳୀ ।

୧୯ । ଅଗାଧୁ ଭଞ୍ଜ – ବାବା କମଳେଶ୍ୱର, ଶବ୍ଦାର୍ଥୀ ଚନ୍ଦ୍ରିକା, ସଙ୍କୀର୍ତ୍ତନ ଅର୍ଘ୍ୟସ୍ଥଳୀ, ପ୍ରଥମ ପ୍ରତିମା, ମଳୟ ମଞ୍ଜୁଷା, କୌତୁକ ବିହାର, କଳାକାର ଗଳାହାର, ପ୍ରବନ୍ଧ ପୁଷ୍ପାଞ୍ଜଳୀ, ମାନସ ସାରସହଦ ଓ ସତ୍ୟାନୁଭବେ ସତ୍ୟନାରାୟଣ ।

୨୦ । ସତ୍ୟବାଦୀ ବଳିୟାରସିଂହ - ଶହୀଦ ରଘୁ-ଦିବାକର, ରଣପୁର ବିଦ୍ରୋହ ରଣପୁର ଇତିହାସ, ବଙ୍ଗଳା ଇତିହାସ, ଅନ୍ଧାରି ମୂଳକର ଆଲୋକ ଶିକ୍ଷା ।

୨୧ । ବଂଶୀଧର ରାଉତ ମନ ସମୁଦ୍ର, ସମ୍ପର୍କ, ଖେଳଘର, ମିଛମିଛି ସମ୍ପର୍କରେ, ପଶାଖେଳ, ଯାଦୁର କରାମତି, ନୂଆ ଝୁଲି ।

୨୨ । ଦୁର୍ଗାଚରଣ ସାହୁ – ସମାଜ ତତ୍ତ୍ୱ (ଆଇ. ଏ. ଓ ବି. ଏ. ଶ୍ରେଣୀପାଇଁ)

୨୩ । ଖଳା ସାହୁ— +୨, +୩ ପାଠ୍ୟକ୍ରମ ପାଇଁ ସମାଜତତ୍ତ୍ୱ ପୁସ୍ତକମାନ

୨୪ । ରାମଚନ୍ଦ୍ର ରାମ - ସଗ୍ରାମୀ

୨୫ । ଶ୍ରୀନିବାସ ପଟ୍ଟନାୟକ – ଚାଲିଁ ପୁଷ୍ପ

୨୬ । ନୀଳକଣ୍ଠ ନାୟକ – ବଇଦ ମୁଣି, ପୁରୁଣା ପେଡ଼ି, କ ଥିଲା କ ହେଲା, କଣ୍ଟ ନାହିଁ ସବୁ ଅଛି, ଅଛବ ବନ୍ଧୁ, ତେଡ଼ିଆ ଘଇ, କଥାଁ ବରଷା, ପୁଅଣି ସଜ, ସୁନ୍ଦର ମାର୍କେଟ ।

୨୭ । ସାଧୁଚରଣ ପରିଡ଼ା – ଭଙ୍ଗେ ମଣିଷରେ ସ୍ୱପ୍ନ ନଅର

୨୮ । ଜାନକୀବଲ୍ଲଭ ପଟ୍ଟନାୟକ – ସପ୍ତର୍ଷି

୨୯ । ଚନ୍ଦ୍ରେଶ୍ୱର ମିଶ୍ର – ଶ୍ରୀ ରାମଲୀଳା

୩୦ । ଜଗଦାନନ୍ଦ ନାଏକ - ଚୁମ୍ବକ ଝଡ଼, ଭ୍ରମର ବାଣୀର ସ୍ୱରେ, ମରିଚିକା ବ ଝୁରେ, କଳାବନ୍ତ ରାଣୀ, ଘୋଡ଼ା ଦଉଡ଼ ।

୩୧ । ଗୋଦାବରୀଶ ଶତପଥୀ – ମହେଶ୍ୱର ଭଜନ ବଳ୍ଲରୀ

୩୨ । ପୂର୍ଣ୍ଣଚନ୍ଦ୍ର ଦାସ – ଶିଶୁ କାଣ୍ଡର ପଦ

୩୩ । ଉଦୟନାଥ ସ୍ୱାଇଁ – ଶିକ୍ଷା ଗାଇଡ (ସିଟି କୋର୍ସ ପାଇଁ)

୩୪ । ସୋମନାଥ ମିଶ୍ର ଶର୍ମା – ଅଳଙ୍କାର ସରଣୀ

୩୫ । ନିମାଇଁଚରଣ ସିଂହଦେଓ – ଯୋଗ୍ରା କାରଖାନା

୩୬ । ଜୟକୃଷ୍ଣ ମିଶ୍ର – କୃତ୍ୟ କୌମୁଦୀ, ନିର୍ଣ୍ଣୟ କୌତୁକମ୍

୩୭ । ଶତ୍ରୁଘ୍ନ ପ୍ରଧାନ – କଳକା

୩୮ । ଗାୟକ ସମ୍ରାଟ ବଳ୍ଲନାଥ ପଟ୍ଟଯୋଶୀ – "ଆଧୁନିକ ସମାଜରେ ପାଲାର ଭୂମିକା"

୩୯ । ମାଗୁଣି ମିଶ୍ର – ରାଜମାଟି ପୁରାଣ, ଗ୍ରାମ ମାଟି ମାଆର

୪୦ । ଧ୍ରୁବଚରଣ ମହାପାତ୍ର - ସତୀ ନର୍ମଦା, ମା ମଙ୍ଗଳା, ଶୃଗୁକ

ସାହିତ୍ୟ, କଳା ଓ ସଂସ୍କୃତି କ୍ଷେତ୍ରରେ ରଣପୁରର ବହୁ ପରିବର୍ତ୍ତନ ହୋଇଛି । ଆଧୁନିକ ସମାଜର ପ୍ରଭାବ ମନୁଷ୍ୟର ଜୀବନଯାତ୍ରାକୁ ପ୍ରଭାବିତ କରୁଛି ।

ଆଧୁନିକ ଶିକ୍ଷାର ପ୍ରସାର ଫଳରେ ବହୁ ଭୌତିକ ଉନ୍ନତି ସମ୍ଭବ ହୋଇଛି । ଅଞ୍ଚଳର ବହୁବିଧ ଉନ୍ନତି ସାଧିତ ହୋଇଛି । କିନ୍ତୁ ପୂର୍ବକାଳର ମହାମାରୀ ବ୍ୟାଧି ଲୋପ ପାଇଥିଲେ ମଧ୍ୟ ବର୍ତ୍ତମାନର ଦୁର୍ନୀତି ବ୍ୟାଧି ସମଗ୍ର ମାନବ ସମାଜକୁ ଅତିମାତ୍ରାରେ ଗ୍ରାସ କରିଛି । ଫଳରେ ଯୋଜନା ମାଧ୍ୟମରେ ବିଭିନ୍ନ ପରିକଳ୍ପନା ପାଇଁ ବ୍ୟୟ ହେଉଥିବା ଅର୍ଥର ଅର୍ଦ୍ଧାଧିକ ଭାଗ ଯାନ୍ତ୍ରିକ ସଂସ୍ଥାର ଅଧିକାରୀମାନଙ୍କ ପରିପୋଷଣ ପାଇଁ ଗୁଳାଯାଉଥିବାର ଅଭିଯୋଗ ହେଉଛି । ରାଜତନ୍ତ୍ରରେ କୌଣସି କର୍ମଚାରୀ ଦୁର୍ନୀତିଯୁକ୍ତ ହେଲେ ସେ କଠୋର ଭାବରେ ଦଣ୍ଡିତ ହେଉଥିଲେ । କିନ୍ତୁ ବର୍ତ୍ତମାନର ସମାଜରେ ଦୁର୍ନୀତିଯୁକ୍ତ ବ୍ୟକ୍ତି ସମ୍ମାନିତ ହେଉଛନ୍ତି ଓ ଭୋଗ ବିଳାସର ପ୍ରାଚୁର୍ଯ୍ୟ ମଧ୍ୟରେ କାଳାତିପାତ କରୁଛନ୍ତି ।

ଆଧୁନିକ ସମାଜ ପ୍ରଗତିଶୀଳ ବୋଲି ଘୋଷଣା କଲେ ମଧ୍ୟ ଅନ୍ତରର ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ଅବକ୍ଷୟ ଘଟିଛି । ସୁତରାଂ ମାନବିକ ମୂଲ୍ୟବୋଧକୁ ପୁନଃ ପ୍ରତିଷ୍ଠିତ କରିବା ଦିଗରେ ଆଜିର ପ୍ରୟାସ ଏକ ନିଷ୍ଫଳ ଆସ୍ଫାଳନ ପରି ମନେହୁଏ । "ବୁଡିଗଲା ଲୋକର ଗୋଡ଼ି ତଳକୁ ତଳ ଖସିଗଲା" ପରି ହିଂସା, ଲୁଣ୍ଠତରାଜ, ଆକ୍ରମଣ, ଅତ୍ୟାଚାର, ଚୋରି, ନାରୀ ଧର୍ଷଣ, ଦୁର୍ନୀତି, ଅନାଚାର ଓ ଭ୍ରଷ୍ଟାଚାର ପ୍ରଭୃତି କ୍ରମେ କ୍ରମେ ସମାଜକୁ କବଳିତ କରି ପକାଇବା ସ୍ଥିତିରେ ଆତ୍ମପ୍ରକାଶ କରୁଛି । ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ଅଭାବ ହେତୁ ଏପରି ଘଟୁଛି । ଯେଉଁ ହିନ୍ଦୁ ସଂସ୍କୃତିର ସୌଜନ୍ୟ, ସାଧୁତା, ସତ୍ୟ, ସହିଷ୍ଣୁତା ଓ ସଦ୍‌ଭାବନା ସମଗ୍ର ବିଶ୍ୱକୁ ମହାନ୍ ଆଦର୍ଶ ବୋଧର ଆଲୋକ ବର୍ତ୍ତିକା ଜାଳିଥିଲା ତାହା ବିଲୟ ହେବାକୁ ବସିଛି ।

ଚରମ ହୀନତା, କଦାଚାର, ଚାକଚକ୍ୟ, ନୀତିହୀନତା ସାମାଜିକ ଜୀବନ ଉପରେ ପ୍ରାଧାନ୍ୟ ଜାହିର କରିଛି । ଫଳରେ ମାନବ ସମାଜ ଧ୍ୱଂସା-ଭିମୁଖୀ ହେବାକୁ ବସିଛି । ଏଣୁ ଏହି ଜଗତ ଉଦ୍ଧାର ପାଇଁ ଭୀମ ଭୋଇଙ୍କର ଇଷ୍ଟ ଓ ମୂଲ୍ୟବୋଧର ଆବଶ୍ୟକତା ପ୍ରତି ପ୍ରାଣେ ପ୍ରାଣେ ଉପଲବ୍ଧି ହେଉଛି । ତାଙ୍କ ଭାଷାରେ –

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ଏହି ଉକ୍ତିକୁ ମର୍ମେ ମର୍ମେ ଅନୁଭବ କରି ଆଜିର ସମାଜ ନିଜର ପନ୍ଥା ସ୍ଥିର କରୁ । ନଚେତ୍ ମାନବ ସମାଜ କଦାପି ଧ୍ୱଂସ ମୁଖରୁ ରକ୍ଷାପାଇବ ନାହିଁ ।

# ସହାୟକ ଗ୍ରନ୍ଥସୂଚୀ

୧- ରଣପୁର ରାଜବଂଶାବଳୀ (ପାଣ୍ଡୁଲିପି)— ପଦ୍ୟାକାରରେ
— ଶ୍ରୀ ଦାମୋଦର ସିଂହଦେଓଙ୍କ ଦ୍ୱାରା ସଂଗୃହୀତ

୨- ରଣପୁର ରାଜ ବଂଶାବଳୀ (ପାଣ୍ଡୁଲିପି) — ଗଦ୍ୟାକାରରେ
— ପଣ୍ଡିତ ଶ୍ରୀ ବଳଭଦ୍ର ଷଡ଼ଙ୍ଗୀଙ୍କ ଦ୍ୱାରା ସଂଗୃହୀତ

୩- ରଣପୁର ବିଦ୍ରୋହ—ଶ୍ରୀ ସତ୍ୟବାଦୀ ବଳିଆର ସିଂହ

୪- ଓଡ଼ିଶା ଇତିହାସ— ଡଃ ହରେକୃଷ୍ଣ ମହତାବ୍

୫- ଓଡ଼ିଶା ଇତିହାସ—ପ୍ୟାରୀ ମୋହନ ଆଚାର୍ଯ୍ୟ

୬- ଉତ୍କଳ ଇତିହାସ— କୃପାସିନ୍ଧୁ ମିଶ୍ର

୭- ପ୍ରାଚୀନ ଉତ୍କଳ - ଜଗବନ୍ଧୁ ସିଂହ

୮- ଓଡ଼୍ର ରାଜବଂଶାବଳୀ—ଡ଼ଃ କାହ୍ନୁଚରଣ ମିଶ୍ର

୯- କପିଳ ସଂହିତା

୧୦- ଶ୍ରୀକ୍ଷେତ୍ର ମହାତ୍ମ୍ୟ

୧୧- ମାଦଳା ପାଞ୍ଜି – ପ୍ରାଚୀ ସଂସ୍କରଣ – ଡଃ ଆର୍ତ୍ତବଲ୍ଲଭ ମହାନ୍ତି

୧୨- ଓଡ଼୍ର କ୍ଷତ୍ରିୟ ପ୍ରଭା – ଶ୍ରୀ ଦାମୋଦର ରାଉତରାୟ

୧୩- ନୀଳକଣ୍ଠ ଗ୍ରନ୍ଥାବଳୀ – ପଣ୍ଡିତ ନୀଳକଣ୍ଠ ଦାସ

୧୪- ପଦ୍ମମଣି ଗ୍ରନ୍ଥାବଳୀ— ଶ୍ରୀ ଚକ୍ରଧର ମହାପାତ୍ର

୧୫- ଖୁରୁଧା ଇତିହାସ - ଶ୍ରୀ କେଦାରନାଥ ମହାପାତ୍ର

୧୬- ଖଣ୍ଡପଡ଼ା ଇତିହାସ— ଶ୍ରୀ ଉଦୟନାଥ ଦାସ

୧୭- ଫିରିଙ୍ଗି କଳି ଭାରତ - ମଧୁସୂଦନ ରାଓ

୧୮- ବ୍ରହ୍ମାଣ୍ଡିରେ ଶ୍ରୀ ନୀଳମାଧବ – ଶ୍ରୀ ରଘୁନାଥ ସିଂହ ସାମନ୍ତ

୧୯- ମଣିନାଗେ— ଶ୍ରୀ ବଳରାମ ସ୍ୱାଇଁ

୨୦ ଚିଲିକା—ରାଧାନାଥ ରାୟ

୨୧- ବିଦ୍ରୋହୀ ଦିବାକର – ପ୍ରଫେସର ଡ଼ଃ ଗୋପାଳଚନ୍ଦ୍ର ମିଶ୍ର

୨୨- ମୁକ୍ତିପଥେ ସୈନିକ  ଶ୍ରୀ ପବିତ୍ର ମୋହନ ପ୍ରଧାନ

୨୩- ଶହୀଦ ରଘୁ-ଦିବାକର - ଶ୍ରୀ ସତ୍ୟବାଦୀ ବଳିଆରସିଂହ

୨୪- ବିବିଧ ରତ୍ନ ସଂଗ୍ରହ — ମୋହନଲାଲ ଦାସ

୨୫- ବିବିଧ ସାର ସଂଗ୍ରହ - ମାଧବଲାଲ

୨୬- ବାଣପୁରରେ ବନ ବିଦ୍ୟାଳୟ — ଶ୍ରୀ ହରିହର ମହାପାତ୍ର

୨୭- ଯୋଗର୍ଷି ଅଚ୍ୟୁତାନନ୍ଦ— ଶ୍ରୀ ଭଗିରଥି ନେପାକ

୨୮- ମହଲ— ୧୯୮୨ ପଞ୍ଚମ ସଂଖ୍ୟା—(ଗୀତା ପ୍ରକାଶନୀ, ଖୋର୍ଦ୍ଧା)

୨୯- ନୟାଗଡ ବାର୍ତ୍ତା (୩୭ ସଂଖ୍ୟା—ନୂଆଗାଁ-ଉଦୟପୁରରୁ ପ୍ରକାଶିତ)
ସଂପାଦନା — ଶ୍ରୀ ପ୍ରଭାକର କୁମାର ପଟ୍ଟନାୟକ

୩୦- ଶିଖା — ପ୍ରଥମ ସଂଖ୍ୟା — (ଗଡ଼ବାଣୀକଲେଜରୁ ପ୍ରକାଶିତ)

୩୧- ବଲ୍ଲର — ସପ୍ତମ ସଂଖ୍ୟା —(ରଣପୁର ଗଡ଼ରୁ ପ୍ରକାଶିତ)
ସଂପାଦନା—ଶ୍ରୀ ସୁରେଶଚନ୍ଦ୍ର ମିଶ୍ର

୩୨- ଆଶା—୧୯୮୬ (ବାଙ୍କୋଇରୁ ପ୍ରକାଶିତ)
ମୁଖ୍ୟ ସଂପାଦକ— ଶ୍ରୀ କାଳଚରଣ ଜୟସିଂହ

୩୩- ଶହୀଦ ରଘୁ-ଦିବାକର ସ୍ମରଣିକା —
ସଂପାଦନା - ଆଡଭୋକେଟ୍ ଗିରିଜାକାନ୍ତ ମହାପାତ୍ର

୩୪- ନବ ଜୀବନ—୨ୟ ବର୍ଷ- ଏକାଦଶ ସଂଖ୍ୟା

୩୫- ସେ ଯୁଗର ଶିକ୍ଷା—(ପାଣ୍ଡୁଲିପି)- ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକ
(ଦଧିମାଛଗାଡିଆ)

୩୬- ନାଗ ଇତିହାସ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ

୩୭- Survey and Settlement Operations of Ranpur Ex-State- Gopinath Singh.

୩୮- Feudatory States of Orissa—C. B. E. Ramsay.

୩୯- Puri District Gezxettier – Nilamani Senapati

୪୦- Beginning of the End—Dr. Harekrishna Mahtab

୪୧- Annual report of Ranpur State—
(1937, 1938, 1944 issues)

୪୨- Answer to twenty five questions—
William A. Lacey.

୪୩- Memoranda on Native States in India – 1907.

୪୪- Orissan Records—Vol II

୪୫- Orissa Gezzettier

୪୬- Inscriptions of Orissa – Vol. II

୪୭- The Feudatory and Tributary States of the Orissa
Division – Part II

୪୮- Studies in Orissan History, Archaeology
and Archives—P. N. Acharya

୪୯- Geneological list of Baramba Raj-family
(Manuscript) Pattayat Sri Brundaban Chandra Deb

୫୦- O. H. R. J. – Vol - II - Part I & Part II

୫୧- O. H. R. J. – Vol - III - Part I

୫୨- O. H. R. J. – Vol - VIII - July No I

